# ଇତିହାସର ଚକ୍ର



ମୂଳ ରଚନା
ଡକ୍ଟର ରାମମନୋହର ଲୋହିଆ
ଅନୁବାଦକ
ଯତୀନ୍ଦ୍ର ମୋହନ ମହାନ୍ତି

# ଇତିହାସର ଚକ୍ର

ଲେଖକ :

ଡକ୍ଟର ରାମମନୋହର ଲୋହିଆ

ଅନୁବାଦକ :

ଅଧ୍ୟାପକ, ଯତୀନ୍ଦ୍ରମୋହନ ମହାନ୍ତି

ଜନଶକ୍ତି ପୁସ୍ତକାଳୟ

ବାଙ୍କୀବଜାର

କଟକ-୨

ପ୍ରଥମ ମୁଦ୍ରଣ

୨୩ ମାର୍ଚ୍ଚ, ୧୯୭୦

ମୂଲ୍ୟ—ଦୁଇଟଙ୍କା ମାତ୍ର

ଲେଖକ : ଡକ୍ଟର ରାମମନୋହର ଲୋହିଆ

ଅନୁବାଦକ : ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତି

ପ୍ରକାଶକ : ଏନ୍. ଏଲ୍. ଗୁପ୍ତା
ଜନଶକ୍ତି ପୁସ୍ତକାଳୟ
ବାଙ୍କାବଜାର
କଟକ-୨

ପ୍ରଚ୍ଛଦ ଶିଳ୍ପୀ : ଅସିତ ମୁଖାର୍ଜି
ଶିଳ୍ପରୂପମ୍
କଟକ-୨

ମୁଦ୍ରକ : ସ୍ୱର୍ଣ୍ଣପ୍ରଭା ପ୍ରିଣ୍ଟର୍ସ
ଡଗରପଡ଼ା
କଟକ-୨

ବଂଧୁ ଗଜେନ୍ଦ୍ର, ଦେବୀ, କୃଷ୍ଣ ଓ ଶରତଙ୍କୁ
ଯେଉଁମାନେ ଲେଣ୍ଢଆଙ୍କୁ ଶ୍ରଦ୍ଧା
ଓ ସମ୍ମାନ କରନ୍ତି

ଯତୀନ୍ଦ୍ର

## ମୁଖବନ୍ଧ—

୧୯୬୨ ମସିହା ନଭେମ୍ବର ୩୦ ତାରିଖ । ଡକ୍ଟର ଲୋହିଆ ଦୁଇଦିନିଆ ଓଡ଼ିଶା ଗସ୍ତରେ ଆସି କଟକ ସହରସ୍ଥ ସର୍କିଟ ହାଉସରେ ରହିଥାଆନ୍ତି । ଚୀନ ସେତେବେଳେ ଆମ ଦେଶର ଉତ୍ତରସୀମାଂର (ନେଫା ଅଞ୍ଚଳରେ ) ବୋମଡ଼ିଲା ଓ ଓ୍ୟାଲଙ୍ଗ ସହର ଦଖଲ କରି ନେଇଥାଏ । ୧୯୫୯ରୁ ଡକ୍ଟର ଲୋହିଆ ବାରମ୍ବାର ସାବଧାନ କରିବା ସତ୍ତ୍ୱେ ନେହେରୁ ସରକାର ଚୀନର ମାଓ ସେ ତୁଂ ସରକାରର ତିବ୍ବତ ସମ୍ପର୍କୀୟ ନୀତିକୁ ପୂରା ସମର୍ଥନ କରିବାରୁ ୧୯୬୨ରେ ଭାରତ ଉପରେ ଚୀନ ଆକ୍ରମଣ ସମ୍ଭବ ହୋଇପାରିଲା । ୧୯୫୦ରେ ଭାରତ ସରକାରର ସମ୍ମତିରେ ଚୀନର କମ୍ୟୁନିଷ୍ଟ ସରକାର ସ୍ୱାଧୀନ ତିବ୍ବତ ଉପରେ ଯେତେବେଳେ ପ୍ରଭାବ ବିସ୍ତାର ଆରମ୍ଭ କଲା, ଡକ୍ଟର ଲୋହିଆ ତାକୁ ଶିଶୁହତ୍ୟା ବୋଲି ଅଭିହିତ କରିଥିଲେ । ସେତେବେଳର ନେହେରୁ ସରକାର ଡକ୍ଟର ଲୋହିଆଙ୍କ ସାବଧାନବାଣୀକୁ ଟିକିଏ କର୍ଣ୍ଣପାତ କରି ଯଦି ତିବ୍ବତକୁ ଚୀନ ହାତରେ ସମର୍ପଣ କରି ନ ଥାଆନ୍ତେ, ତେବେ ୧୯୬୨ରେ ଭାରତ ଉପରେ ଚୀନ ଆକ୍ରମଣ ହୋଇ ନ ଥାଆନ୍ତା । ଏଇ ପରିପ୍ରେକ୍ଷୀରେ ଡକ୍ଟର ଲୋହିଆଙ୍କ କଟକ ସହରର ସାଧାରଣ ସଭାକୁ କଟକ ସହରବାସୀ ଖୁବ୍ ଉତ୍କଣ୍ଠାର ସହ ଅପେକ୍ଷା କରିଥାଆନ୍ତି ।

ମୋର ବନ୍ଧୁ ନିତ୍ୟାନନ୍ଦ ଡକ୍ଟର ଲୋହିଆଙ୍କୁ ସେଦିନ କଟକ ସର୍କିଟ ହାଉସରେ ତାଙ୍କର Wheel of History ବହିକୁ ଓଡ଼ିଆରେ ଅନୁବାଦ କରିବାକୁ ଅନୁମତି ମାଗିଥିଲେ । ଡକ୍ଟର ଲୋହିଆ ତାଙ୍କର ସ୍ୱାଭାବିକ ମମତାପୂର୍ଣ୍ଣ ଭାଷାରେ ସ୍ୱୀକୃତି ଦେଇଥିଲେ । ସୁଖର କଥା ଯେ, ବନ୍ଧୁ ନିତ୍ୟାନନ୍ଦଙ୍କ ଅଦମ୍ୟ ଚେଷ୍ଟା ଫଳରେ ଡକ୍ଟର ଲୋହିଆଙ୍କ 'ଇତିହାସ ଚକ୍ର'ର ପ୍ରକାଶନ ସମ୍ଭବ ହୋଇପାରିଛି । ଅନୁବାଦକ ଶ୍ରୀମାନ୍ ଯତୀନ୍ଦ୍ର ଡକ୍ଟର ଲୋହିଆଙ୍କ ଚିନ୍ତାଧାରା ସହ ସୁପରିଚିତ । ଉଭୟ ଇଂରେଜୀ ଓ ଓଡ଼ିଆ ଭାଷା ଉପରେ ତାଙ୍କର ଦଖଲ ରହିଛି । ସେ ମଧ୍ୟ ଡକ୍ଟର ଲୋହିଆଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସି ତାଙ୍କର ଆଦର୍ଶଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ଯତୀନ୍ଦ୍ରଙ୍କ ବ୍ୟତୀତ ଡକ୍ଟର ଲୋହିଆଙ୍କ ଏ ବହିକୁ ଓଡ଼ିଆରେ

ଅନୁବାଦ କରିବାକୁ ଆଉ ବା କିଏ ଅଧିକ ସମର୍ଥ ହୋଇପାରି ଥାଆନ୍ତା ? ଏ ଦୁଇ ବନ୍ଧୁଙ୍କ ଚେଷ୍ଟା ଫଳରେ ଏହା ପ୍ରକାଶିତ ହେବାଦ୍ୱାରା ଓଡ଼ିଆ ଭାଷାରେ ମୌଳିକ ରାଜନୈତିକ ଦର୍ଶନ ଉପରେ ବହିର ଅଭାବ ଅନେକାଂଶରେ ଯେ ଦୂର ହୋଇପାରିବ, ଏଥିରେ ମୋର ସନ୍ଦେହ ନାହିଁ ।

ଯଦି କେହି ଡକ୍ଟର ଲୋହିଆଙ୍କ ମୂଳ ଦର୍ଶନ ବିଷୟରେ ଜାଣିବାକୁ ଚାହିଁବେ, ତେବେ ତାଙ୍କୁ Wheel of Historyହିଁ ପ୍ରଥମେ ପଢ଼ିବାକୁ ହେବ । ଏହାକୁ 'ଲୋହିଆ କ୍ଲାସିକ୍ସ' ମଧ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଲୋହିଆ ଦୁନିଆରେ ଏକ ନୂତନ ସମାଜବାଦୀ ଚିନ୍ତାଧାରାର ପ୍ରବର୍ତ୍ତକ । ସେ Economics After Marx ବହି ଲେଖୁଥିବାବେଳେ ଭାରତୀୟ ସମାଜବାଦୀ ଆନ୍ଦୋଳନର ଅନ୍ୟତମ ନେତା ଓ ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ସ୍ୱର୍ଗତ ୟୁସୁଫ ମେହେରେଲି କହିଥିଲେ, "ରାମ ମନୋହର ଯଦି ଧୈର୍ଯ୍ୟର ସହ ବସି ଏ ବହିକୁ ପୂରା କରିଦେବ, ତେବେ ଏ ବହି କାର୍ଲମାର୍କସଙ୍କ 'ଦାସ କ୍ୟାପିଟାଲ' ଠାରୁ ଅଧିକ ପ୍ରଭାବଶାଳୀ ବହି ହୋଇପାରିବ ।" ଡକ୍ଟର ଲୋହିଆ ୧୯୩୧-୩୩ ପର୍ଯ୍ୟନ୍ତ ବର୍ଲିନରେ ରହି ତାଙ୍କ ଡକ୍ଟରେଟ କରିଥିଲେ । ସେ କାର୍ଲମାର୍କସ୍‌ଙ୍କ ଦାର୍ଶନିକ ତତ୍ତ୍ୱ-ମୂଳ ଜର୍ମାନୀ ଭାଷାରେ ପଢ଼ିଥିଲେ । ସେ ବୋଧହୁଏ ଏକମାତ୍ର ଭାରତୀୟ, ଯେ କି କାର୍ଲମାର୍କସଙ୍କ ଦର୍ଶନକୁ ଜର୍ମାନୀ ଭାଷାରୁ ପଢ଼ିଥିଲେ । କିନ୍ତୁ ଡକ୍ଟର ଲୋହିଆଙ୍କ ଚିନ୍ତାଧାରାର ସବୁଠାରୁ ବଡ଼ ବିଶେଷତ୍ୱ ହେଲା ଯେ, ସେ ତାଙ୍କ ଜୀବନରେ କେବେ ମାର୍କସବାଦୀ ନ ଥିଲେ । ଭାରତବର୍ଷରେ ଜୟପ୍ରକାଶଙ୍କ ଭଳି ବହୁ ସମାଜବାଦୀ ନେତା ମାର୍କସ୍‌ବାଦ ଅଧ୍ୟୟନ କରି କେତେକ ବର୍ଷ କମ୍ୟୁନିଷ୍ଟ ରହିବା ପରେ ବହୁ କାରଣରୁ କମ୍ୟୁନିଷ୍ଟବାଦରୁ ସ୍ୱତନ୍ତ୍ର ହୋଇ ସମାଜବାଦୀ ଦର୍ଶନକୁ ଗ୍ରହଣ କରିଥିଲେ । ସେହିପରି ଏମ୍. ଏନ୍. ରାୟ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ଲେନିନଙ୍କ ସହକର୍ମୀ ଥିଲେ । କିନ୍ତୁ ତାଙ୍କର ରୁଷ କମ୍ୟୁନିଷ୍ଟମାନଙ୍କ ସହ ଘୋର ମତଭେଦ ହେଲାପରେ ସେ ଭାରତବର୍ଷକୁ ଆସି 'ଉଗ୍ରବାଦୀ ମାନବବାଦ'ର ସ୍ରଷ୍ଟା ହେଲେ । ସେ ଉଚ୍ଚକୋଟୀର ବୁଦ୍ଧିଜୀବୀ ମଧ୍ୟ ଥିଲେ । ଏ ଦୁହେଁ ସମାଜବାଦରେ ବିଶ୍ୱାସ କରୁଥିଲେ ସୁଦ୍ଧା ଏ ଦୁହିଁଙ୍କର ଆଦର୍ଶରେ ବୈପ୍ଳବିକ ଦୃଷ୍ଟିକୋଣର ଅଭାବ ଯୋଗୁଁ ଏମାନେ ଦେଶର ଓ

ଦୁନିଆଁର ସମାଜବାଦୀ ଆନ୍ଦୋଳନକୁ ପ୍ରଭାବିତ କରିପାରିଲେ ନାହିଁ । ଅନ୍ୟ ପକ୍ଷରେ ଡକ୍ଟର ଲୋହିଆ ମାର୍କସବାଦର ମୂଳନୀତିଗୁଡ଼ିକୁ ଆରମ୍ଭରୁ ବିରୋଧ କରି ଆସିଛନ୍ତି । ଲୋହିଆ କିପରି ମାର୍କସବାଦର ମୂଳତତ୍ତ୍ୱକୁ ତର୍କଦ୍ୱାରା କାଟିଛନ୍ତି, ତା ଏ ବହିର ପ୍ରତ୍ୟେକ ଅନୁଚ୍ଛେଦରେ ଅତି ସୁସ୍ପଷ୍ଟ । କେବଳ ସେତିକି ନୁହଁ, ସେ ମାର୍କସବାଦ ବା କମ୍ୟୁନିଷ୍ଟ ବାଦକୁ ସମ୍ପୂର୍ଣ୍ଣ ନାମଞ୍ଜୁର କରି ତା ବଦଳରେ ଏକ ନୂତନ ସମାଜବାଦୀ ଦର୍ଶନର ସୃଷ୍ଟି କଲେ । ଏ ବହି ତାଙ୍କର ସେ ସୃଜନଶକ୍ତିର ରୂପାନ୍ତର ମାତ୍ର ।

ମାର୍କସବାଦ ଦୁନିଆର ସମସ୍ତ ଲାଞ୍ଛିତ ଓ ପଦଦଳିତ ଜନସାଧାରଣଙ୍କର ଦର୍ଶନ ହୋଇପାରେ ନା ବୋଲି ଡକ୍ଟର ଲୋହିଆଙ୍କର ବିଶ୍ୱାସ । ମାର୍କସବାଦୀ ଦର୍ଶନରେ ସାର୍ବଜନୀନତାର ଅଭାବ ପରିଲକ୍ଷିତ ହୁଏ । ମାର୍କସବାଦ ଏକ ୟୁରୋପୀୟ ମତବାଦ । ଦୁନିଆର ଦୁଇତୃତୀୟାଂଶ ଅଞ୍ଚଳ ( ଏସିଆ, ଆଫ୍ରିକା ଓ ଲାଟିନ ଆମେରିକା ) ସମ୍ପର୍କରେ କାର୍ଲ ମାର୍କସଙ୍କର ସନ୍ଧାନ ବହୁତ ସୀମାବଦ୍ଧ ଥିଲା । ସେହି ଦୃଷ୍ଟିରୁ ସେ ଭବିଷ୍ୟତ ବାଣୀ କରିଥିଲେ ଯେ, ଦୁନିଆରେ ସବୁଠାରୁ ଶିଳ୍ପପ୍ରଧାନ ଦେଶ ଜର୍ମାନୀରେ ପ୍ରଥମେ ବିପ୍ଳବ ହେବ । କିନ୍ତୁ ତା ନ ହୋଇ ବିପ୍ଳବ ପ୍ରଥମେ ସୋଭିଏଟ ରୁଷରେ ଦେଖାଦେଲା । ତାଙ୍କ ମତରେ ପୁଞ୍ଜିବାଦ ସାମନ୍ତବାଦ ତୁଳନାରେ ପ୍ରଗତିଶୀଳ ଥିଲା । କିନ୍ତୁ ତା କେବଳ ୟୁରୋପ ପାଇଁ ପ୍ରଯୁଜ୍ୟ । ଭାରତବର୍ଷର ସାମାଜିକ, ଆର୍ଥନୀତିକ ଓ ରାଜନୀତିକ ସ୍ଥିତି ସହ ଯେ ପରିଚିତ, ସେ ଜାଣେ ଯେ, ଏଠାରେ ପୁଞ୍ଜିବାଦୀ ସଭ୍ୟତାର ଉଦ୍ଭବ ସହ ଦାରିଦ୍ର୍ୟ ବଢ଼ି ଚାଲିଲା । ଏ କଥା କିଏ ନ ଜାଣେ ଯେ, ଗୋରା ବ୍ରିଟିସ ସରକାର ତାଙ୍କର ବାଣିଜ୍ୟ ବଢ଼ାଇବା ଦୃଷ୍ଟିରୁ ଓ ମାଞ୍ଚେଷ୍ଟରର ଲୁଗାକଳ ମାଲିକଙ୍କୁ ପୋଷିବା ପାଇଁ ଆମର କୁଟୀର-ଶିଳ୍ପକୁ ଧ୍ୱଂସ କଲେ ଏବଂ ଆମ କାରିଗର ଓ ତନ୍ତୀମାନଙ୍କର ଆଙ୍ଗୁଠି କାଟିଦେଲେ ? ସେଇ ଦୃଷ୍ଟିରୁ ଗୋରା ସରକାର ଆମ ଦେଶରେ ରେଳର ପ୍ରଚଳନ କଲେ । ବ୍ରିଟିସ ସରକାରର କେତେକ ଭାରତୀୟ ସମର୍ଥକ ରେଳରାସ୍ତା ପ୍ରଚଳନକୁ ପ୍ରଗତିବାଦୀ ବୋଲି ବିଶ୍ୱାସ କରୁଥିଲେ । କିନ୍ତୁ ବାସ୍ତବରେ ତା ଗୋଲାମୀ ମନୋବୃତ୍ତିର ପରିଚ୍ଛାୟକ । ଡକ୍ଟର ଲୋହିଆ ଏଇସବୁ ଦୃଷ୍ଟିରୁ କହୁଥିଲେ ଯେ, ଗୋରା ୟୁରୋପୀୟ ଲୋକମାନଙ୍କ ମୁହଁରେ

କେବଳ ହସ ଫୁଟେଇବାରେହିଁ ମାର୍କସବାଦ ସମର୍ଥ ହୋଇପାରିଛି । ଏଥିପାଇଁ ସେ ମାର୍କସବାଦୀମାନଙ୍କୁ କେବେ ମାଫ୍ କରିନାହାନ୍ତି ।

ଇତିହାସର ବସ୍ତୁତାନ୍ତ୍ରିକ ବିଶ୍ଳେଷଣ ଶୀର୍ଷକ ଅନୁଚ୍ଛେଦରେ ସେ କହିଛନ୍ତି ଯେ, ମଣିଷର ପେଟ ଓ ମନର ଗୃହିବାକୁ ସମାନ ଭାବରେ ଜୋର ଦେବା ଦରକାର । କମ୍ୟୁନିଷ୍ଟ ଓ ମାର୍କସବାଦୀମାନେ କେବଳ ପେଟର ସମସ୍ୟାକୁ ଉଠାଇ ଥାଆନ୍ତି । କିନ୍ତୁ ଡକ୍ଟର ଲୋହିଆ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଦରଦାମ ବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନକୁ ପେଟର ଲଢ଼ାଇ ଓ ନାଗରିକ ସ୍ୱାଧୀନତା ଏବଂ ଭାରତବର୍ଷରେ ଇଂରାଜୀ ଭାଷାକୁ ସାର୍ବଜନୀନ ଜୀବନରୁ ବହିଷ୍କାର କରିବା ଆନ୍ଦୋଳନକୁ ମନର ଲଢ଼ାଇ ବୋଲି ଅଭିହିତ କରୁଥିଲେ । ତାଙ୍କର ଜୀବଦ୍ଦଶା ମଧ୍ୟରେ ସେ ଏ ଉଭୟ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଓ ଏହାର ପ୍ରଚାର ଓ ପ୍ରସାର ପାଇଁ ଅକ୍ଳାନ୍ତ ପରିଶ୍ରମ ମଧ୍ୟ କରୁଥିଲେ ।

ଗୋରା ଦେଶମାନଙ୍କରୁ ଯେଉଁସବୁ ଚିନ୍ତାଧାରା ଆସିଛି, ତାକୁ ସେ ଅନ୍ଧ ଭାବରେ ଅନୁକରଣ କରିବାର ଘୋର ବିରୋଧୀ ଥିଲେ । ଗୋରା-ଲୋକଙ୍କୁ ମଣିଷ ଭାବରେ ସେ ଖୁବ୍ ଭଲ ପାଉଥିଲେ । କିନ୍ତୁ ତାଙ୍କର ଚିନ୍ତାଧାରାକୁ ନକଲ କରିବାର ସେ ଘୋର ବିରୋଧୀ ଥିଲେ । ଗତ ୩୦୦ ବର୍ଷର ଇତିହାସ ୟୁରୋପର ଇତିହାସ କହିଲେ ଚଳେ ବୋଲି ତାଙ୍କ ମତ ଥିଲା । ସେଥିପାଇଁ ସେ ଏକ ନୂତନ ବିକଳ୍ପ ଚିନ୍ତାଧାରାର ଆବିଷ୍କାର କରିବାପାଇଁ ସଙ୍କଳ୍ପ କରିଥିଲେ । ସେଇ ସଂକଳ୍ପ ତାଙ୍କୁ ଏ ବହି ଲେଖିବାପାଇଁ ପ୍ରେରଣା ଦେଇଥିଲା ।

ମାର୍କସବାଦୀ ତଥା ଭାରତୀୟ କମ୍ୟୁନିଷ୍ଟମାନେ କେବଳ ଶ୍ରେଣୀ ସଂଘର୍ଷରେ ବିଶ୍ୱାସ କରନ୍ତି । କିନ୍ତୁ ଶ୍ରେଣୀ ଯେ ଗତିଶୀଳ ଜାତି ଓ ଜାତି ଯେ ଗତିହୀନ ଶ୍ରେଣୀ, ସେମାନେ ତା ଭୁଲିଯାଇଛନ୍ତି । ସେଥିପାଇଁ ସେମାନଙ୍କର ଚିନ୍ତାରେ ସଙ୍କଟ ଆସିଛି । ଏ ବହିର ଶ୍ରେଣୀ ଓ ଜାତି ଶୀର୍ଷକ ଅନୁଚ୍ଛେଦରେ ଡକ୍ଟର ଲୋହିଆ ମାର୍କସବାଦର ଉକ୍ତ ତର୍କକୁ ଖଣ୍ଡନ କରିଛନ୍ତି । ଭାରତବର୍ଷରେ ହଜାର ହଜାର ବର୍ଷର ଜାତିପ୍ରଥା ଆମ ସମାଜର ଶୁଦ୍ରଜାତି ଓ ନାରୀ ସମାଜକୁ ଉପରକୁ ନ ଉଠାଇବା ପାଇଁ ସମସ୍ତ ପ୍ରକାର ଦାର୍ଶନିକ ଓ ଧାର୍ମିକ ଇନ୍ଦ୍ରଜାଲ ସୃଷ୍ଟି କରିଛନ୍ତି ।

ମାର୍କସବାଦର ସବଂହରାର 'ଅଧିନାୟକବାଦ'ର ସିଦ୍ଧାନ୍ତକୁ ଭାରତବର୍ଷରେ ଲାଗୁକଲେ, ଏଠାରେ ଉଚ୍ଚ ଜାତିମାନଙ୍କର କେବଳ ପ୍ରାଧାନ୍ୟ ଜାରି ରହିବ । ସେଥିପାଇଁ ସେ କହୁଥିଲେ ଯେ, ଜାତିପ୍ରଥାର ସଂସ୍କାର ଯୋଗୁଁ କର୍ମକୁଶଳତା କେତେକ ଉଚ୍ଚଜାତି ଲୋକଙ୍କ ମଧ୍ୟରେ ହିଁ ସୀମାବଦ୍ଧ ରହିଛି । ତେଣୁ ସେ କୁଶଳତାକୁ ସର୍ବାଧିକ କରିବା ପରିବର୍ତ୍ତେ ସମ୍ପୂର୍ଣ୍ଣ କରିବାକୁ କହୁଥିଲେ ।

ଫ୍ରାନ୍ସ ଓ ରୁଷ ବିପ୍ଳବ ପରେ ୟୁରୋପରୁ ସମାନ ସୁଯୋଗ ଦେବାର ସିଦ୍ଧାନ୍ତ ଆମ ଦେଶକୁ ଆମଦାନୀ ହେଲା । ଆମ ଦେଶର ବୁଦ୍ଧିଜୀବୀ ଓ ରାଜନୈତିକ ନେତାମାନେ ୟୁରୋପର ଏଇ ସିଦ୍ଧାନ୍ତକୁ ନକଲ କରି ଆମ ସମ୍ବିଧାନରେ ସମସ୍ତଙ୍କୁ ସମାନ ସୁଯୋଗ ଦେବାର ସିଦ୍ଧାନ୍ତକୁ ଲିପିବଦ୍ଧ କଲେ । ଫଳରେ ଦେଶର ଅଗଣିତ ଶୂଦ୍ର, ହରିଜନ, ଆଦିବାସୀ ବନବାସୀ ଓ ସାରା ନାରୀସମାଜ ଯେଉଁ ତିମିରକୁ ସେଇ ତିମିରରେ ରହିଲେ । ତଥାକଥିତ ଯୋଗ୍ୟତାର ମାପକାଠିର ବାହାନା ଦେଖାଇ ଏମାନଙ୍କୁ ସମସ୍ତ ସୁଯୋଗରୁ ବଞ୍ଚିତ କରାଗଲା । ସେଥିଯୋଗୁଁ ଡକ୍ଟର ଲୋହିଆ ଶ୍ରେଣୀସଂଘର୍ଷ ଓ ଜାତିସଂଘର୍ଷ ଉପରେ ମଧ୍ୟ ସମାନ ଜୋର ଦେଉଥିଲେ । ବୁଦ୍ଧ ଓ ଗାନ୍ଧୀଙ୍କ ଭଳି ଯୁଗପ୍ରବର୍ତ୍ତକ ବ୍ୟକ୍ତିମାନେ ଜାତିପ୍ରଥା ବିରୁଦ୍ଧରେ ଆବାଜ ଉଠାଇଥିଲେ । କିନ୍ତୁ ଜାତିପ୍ରଥା ଦୂର କରିବାପାଇଁ ସେମାନେ ଉଚ୍ଚଜାତିର ଉଦାରତା ଉପରେ ବିଶ୍ୱାସ କରୁଥିଲେ । ଡକ୍ଟର ଲୋହିଆ ଏ ସମ୍ପର୍କରେ ଏକ ନୂତନ ନୀତିର ସନ୍ଧାନ ଦେଲେ । ସେ କହିଲେ ବୁଦ୍ଧ ଓ ଗାନ୍ଧୀଙ୍କ ଚେଷ୍ଟା ସତ୍ତ୍ୱେ ମଧ୍ୟ ଭାରତ-ବର୍ଷରୁ ଜାତିପ୍ରଥା ଲେଶମାତ୍ର ଦୂର ହୋଇନାହିଁ । ପଛୁଆ ଜାତି, ହରିଜନ ଓ ଆଦିବାସୀ ଏବଂ ନାରୀ ସମାଜର ତଥାକଥିତ ଯୋଗ୍ୟତା ଥାଉ ବା ନ ଥାଉ, ସେମାନଙ୍କୁ ଦେଶର ରାଜନୀତି, ବ୍ୟବସାୟ, ସେନା ଓ ଉଚ୍ଚ ଚାକିରୀମାନଙ୍କରେ ବିଶେଷ ସୁବିଧା ଦିଆଯାଉ ବୋଲି ସେ ମତଦେଲେ । ଭାରତବର୍ଷର ସମାଜବାଦୀ ଆନ୍ଦୋଳନରେ ଏ ନୀତିକୁ ସେ ଅଗ୍ରାଧିକାର ଦେଲେ ଓ ଏମାନଙ୍କ ପାଇଁ ଉପରୋକ୍ତ ସ୍ଥାନମାନଙ୍କରେ ଷାଠିଏ ଭାଗ ସ୍ଥାନ ସଂରକ୍ଷିତ ରଖିବାପାଇଁ ଆବାଜ ଉଠାଇଲେ ।

ଆମ ମାତୃଭାଷାରେ ଏ ବହି ପ୍ରକାଶିତ ହେବାଦ୍ୱାରା ବୁଦ୍ଧିଜୀବୀ, ରାଜନୈତିକ କର୍ମୀ ଓ ସର୍ବୋପରି ଆମର ଯୁବସମାଜ ଡକ୍ଟର ଲୋହିଆଙ୍କ

ଦର୍ଶନର ମୂଳଭିତ୍ତି ସମ୍ବନ୍ଧରେ ସମ୍ୟକ୍ ଧାରଣା ପାଇବେ । କିନ୍ତୁ ଏ ପ୍ରକାର ଦାର୍ଶନିକ ତତ୍ତ୍ୱ ଉପରେ ବିଶ୍ଳେଷଣାତ୍ମକ ସମୀକ୍ଷା ଓ ନିବନ୍ଧ ଲେଖିବାପାଇଁ ଗୁରୁତର ପ୍ରୟାସ ନ ହେଲେ ଓଡ଼ିଆ ଭାଷାରେ ଡକ୍ଟର ଲୋହିଆଙ୍କ ଏ ବହି ପ୍ରକାଶ କରିବାର ଲକ୍ଷ୍ୟ ଅସମ୍ପୂର୍ଣ୍ଣ ରହିଯିବ । ମୋର ଆଶା ଓ ବିଶ୍ୱାସ, ଆମ ପାଠକ ପାଠିକାମାନେ ଭବିଷ୍ୟତରେ ସେ ପ୍ରକାର ପ୍ରୟାସ କରିବାକୁ ଏ ବହିରୁ ଯଥେଷ୍ଟ ପ୍ରେରଣା ପାଇବେ ।

ଡକ୍ଟର ଲୋହିଆ ଆମ ଭିତରେ ନାହାନ୍ତି ସତ; କିନ୍ତୁ ତାଙ୍କର ବିଚାର ଆମମାନଙ୍କର ସାମନାରେ ରହିଛି । ତାଙ୍କ ଦର୍ଶନର କେତେକ ମୂଳମନ୍ତ୍ର ଇତିହାସ ଚକ୍ର ବହିରେ ଲିପିବଦ୍ଧ ହୋଇଛି । ତାଙ୍କ ଜୀବଦ୍ଦଶାରେ ସେ ଉକ୍ତ ମନ୍ତ୍ରଗୁଡ଼ିକୁ କାର୍ଯ୍ୟାନ୍ୱିତ କରିବାକୁ ଚେଷ୍ଟା କରିଛନ୍ତି । ଭାରତୀୟ ରାଜନୀତିକ ପୁରୁଷମାନଙ୍କ ଜୀବନର ଉକ୍ତି ଓ କୃତି ମଧ୍ୟରେ ସାମଞ୍ଜସ୍ୟ ରଖିବା ଉପରେ ସେ ଜୋର ଦେଉଥିଲେ । ବ୍ୟକ୍ତି ଓ ସମାଜ ଉଭୟଙ୍କୁ ବଦଳାଇପାରିଲେ ସମାଜବାଦୀ ବିପ୍ଳବ ସମ୍ଭବ ବୋଲି ସେ ବିଶ୍ୱାସ କରୁଥିଲେ ।

ଡକ୍ଟର ଲୋହିଆଙ୍କ ଦାର୍ଶନିକ ତତ୍ତ୍ୱଗୁଡ଼ିକୁ ଓଡ଼ିଆ ଭାଷାରେ ଅନୁବାଦ କରିବାରେ ପ୍ରକାଶକ ଓ ଅନୁବାଦକ ଯେଉଁ ପ୍ରାରମ୍ଭିକ ପ୍ରୟାସ କରିଛନ୍ତି । ସେଥିପାଇଁ ଏ ଦୁହିଁଙ୍କୁ ମୁଁ ଧନ୍ୟବାଦ ଦେଉଛି । କିନ୍ତୁ ମୁଁ ଏମାନଙ୍କଠାରୁ ଆଶା କରିବି ଯେ, ଏମାନେ ଡକ୍ଟର ଲୋହିଆଙ୍କ ଅନ୍ୟାନ୍ୟ ମୂଲ୍ୟବାନ ଲେଖାଗୁଡ଼ିକର ଅନୁବାଦ କରିବାର ଚେଷ୍ଟାକୁ ଜାରି ରଖିବେ । ଆମ ଦେଶର ଯୁବସମାଜକୁ ମମତା ଓ ସମାଜବାଦ ଆଦର୍ଶରେ ଉଦ୍‌ବୁଦ୍ଧ କରିବାକୁ ଡକ୍ଟର ଲୋହିଆଙ୍କ ଏ 'ଇତିହାସ ଚକ୍ର' ବହିଟି ଯେ ସମର୍ଥ ହେବ, ଏଥିରେ ମୋ ମନରେ କୌଣସି ସନ୍ଦେହର ଅବକାଶ ନାହିଁ ।

୩୦ ଏ ଅତୁଲ ଗ୍ରୋଭ ରୋଡ଼
ନୂଆ ଦିଲ୍ଲୀ
୧୨ । ୪ । ୭୦

ରବି ରାୟ

## ପ୍ରକାଶକର ପଦେ—

ଏ ପୁସ୍ତକ ପ୍ରକାଶନ ଅବସରରେ ମୋର କେବଳ ଗୋଟିଏ କଥା ମନେ ପଡ଼ୁଛି—ଡକ୍ଟର ଲେଭ୍ଚିତ୍ସ୍କା ଯଦି ଆଜ ଜୀବିତ ଥା'ନ୍ତେ !! …… ଆମ ରାଷ୍ଟ୍ରଭାଷା ତଥା ବିଭିନ୍ନ ଭାରତୀୟ ଆଞ୍ଚଳିକ ଭାଷା ବିକାଶ କ୍ଷେତ୍ରର ମହାନ୍ ପୃଷ୍ଠପୋଷକ ଡକ୍ଟର ଲେଭ୍ଚିତ୍ସ୍କାଙ୍କୁ ତାଙ୍କ ପୁସ୍ତକ "The wheel of History"ର ଓଡ଼ିଆ ଅନୁବାଦ ପାଇଁ ମୁଁ ଯେତେବେଳେ ଅନୁରୋଧ କଲି, ସେ ଅତି ଆନନ୍ଦର ସହିତ ମତେ ସହୃଦୟ ଅନୁମତି ପ୍ରଦାନ କଲେ । କିନ୍ତୁ ମୋର ଦୁର୍ଭାଗ୍ୟ, ତାଙ୍କ ରଚନାର ସର୍ବପ୍ରଥମ ଓଡ଼ିଆ ଅନୁବାଦ ତାଙ୍କ ହାତରେ ଅର୍ପଣ କରିପାରିଲି ନାହିଁ । ତାଙ୍କ ଅବର୍ତ୍ତମାନରେ ଏ ପୁସ୍ତକ ଆଜ ପ୍ରକାଶ ପାଉଛି—ଯେତେ ସାମାନ୍ୟ ହେଲେ ମଧ୍ୟ ତାଙ୍କ ଜୀବନ-କାଳର ଏକ ବାସନା ଆଜ ପୂର୍ଣ୍ଣ ହେଉଛି—ଏହାହିଁ ମୋର ସାନ୍ତ୍ୱନା ।

ନିତ୍ୟାନନ୍ଦ ଲାଲ ଗୁପ୍ତା

# ସୂଚୀ



———



ଜନ୍ମ : ୨୩ ମାର୍ଚ୍ଚ, ୧୯୧୦ ତିରୋଧାନ : ୧୨ ଅକ୍ଟୋବର, ୧୯୬୭



# ଉଦ୍ଦେଶ୍ୟ ଓ ଇତିହାସ

ପ୍ରାୟ କୋଡ଼ିଏ ବର୍ଷତଳେ ବର୍ଲିନ୍ ବିଶ୍ୱବିଦ୍ୟାଳୟର ଗୋଟିଏ ହୋଟେଲ୍‌ରେ କେତେକ ଇତିହାସଗ୍ରନ୍ଥ ବସି ଆଲୋଚନା କରୁଥିଲେ । ତାଙ୍କ ମଧ୍ୟରୁ କେତେକ ହେଗେଲ୍‌ଙ୍କର ଓ ଅନ୍ୟ କେତେକ ମାର୍କ୍‌ସ୍‌ଙ୍କର ଭକ୍ତ ଥିଲେ । ଏହି ଦଳରେ ମୁଁ ବି ଥିଲି ଓ ମୁଁ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ଭାରତ ସମ୍ପର୍କରେ ଗୋଟିଏ ପ୍ରଶ୍ନ ପଚାରିଲି । ପ୍ରଶ୍ନଟି ହେଲା, 'ଭାରତବର୍ଷ ଗୋଟିଏ ପୁରାତନ ଓ ଉନ୍ନତ ସଭ୍ୟତାସମ୍ପନ୍ନ ଦେଶ ହୋଇଥିବା ସତ୍ତ୍ୱେ ବିଦେଶୀ ଶାସନର ଅଧୀନ କିପରି ହେଲା ।'

ମୋର ମାର୍କିଷ୍ଟ ବନ୍ଧୁ ଉତ୍ତର ଦେଲେ । ସେ କହିଲେ, ମୋ ପ୍ରଶ୍ନର ଉତ୍ତର ଦେବାକୁ ହେଲେ ଅନେକଗୁଡ଼ିଏ କାରଣର କଥା ଚିନ୍ତା କରିବାକୁ ହେବ । ପ୍ରଥମତଃ ଭାରତରେ ମାର୍କେଟ୍ ବା ପଣ୍ୟସଂସ୍ଥା ଗ୍ରାମର ପରିସର ଛାଡ଼ି ସମଗ୍ର ଦେଶର ଜାତୀୟ କ୍ଷେତ୍ରରେ ବିସ୍ତୃତ ହୋଇପାରିଲା ନାହିଁ । ଦ୍ୱିତୀୟତଃ ଖୁବ୍ ବ୍ୟାପକଭାବରେ ଲୋକମାନେ ଜମିରୁ ଉଚ୍ଛେଦ ନ ହେବାରୁ ଦେଶରେ ଯଥେଷ୍ଟ ସଂଖ୍ୟାରେ ଭୂମିହୀନ ଶ୍ରମିକ ନାହାନ୍ତି । ପୁଣି ଶିଳ୍ପ ପ୍ରଭୃତିରେ ବିନିଯୋଗ ହେବାପାଇଁ ଦେଶରେ ଯଥେଷ୍ଟ ପରିମାଣରେ ବ୍ୟବସାୟପୁଞ୍ଜି ନାହିଁ ଓ ପରିଶେଷରେ ଭାରତ ଭାଗ୍ୟରେ ଅନ୍ୟ ଦେଶକୁ ଲୁଣ୍ଠନ କରି ସେହି ଲୁଣ୍ଠିତ ଦ୍ରବ୍ୟ ବିନିଯୋଗ କରିବାର ସୁଯୋଗ ଘଟି ନାହିଁ ।

ମାର୍କିଷ୍ଟ ବନ୍ଧୁଙ୍କର ବିଶ୍ଳେଷଣ ବେଶ୍ ବ୍ୟାପକ ଓ ଅନେକ ପରିମାଣରେ ସତ୍ୟ । ବିଲାତ ଲୋକେ ଭାରତକୁ ଆସିବା ପୂର୍ବରୁ

ଦେଶର ମାର୍କେଟ୍ ଗ୍ରାମର ପରିସରରେ ସୀମିତ ଥିଲା ଓ ଏଇ ଦେଶରେ ଭୂମିହୀନ ଶ୍ରମିକ ଓ ବ୍ୟବସାୟପୁଞ୍ଜିର ଯଥେଷ୍ଟ ଅଭାବ ରହିଥିଲା ; କିନ୍ତୁ ଇଂଲଣ୍ଡ ପ୍ରଭୃତି ଦେଶରେ ଅନ୍ୟ ପ୍ରକାର ଆବଶ୍ୟକୀୟ ପରିସ୍ଥିତି ଥିବା ଦୃଷ୍ଟିରୁ ଭାରତରେ ଯେ କାହିଁକି ତା ସମ୍ଭବ ହେଲା ନାହିଁ, ମୁଁ ଏଇ ପ୍ରଶ୍ନ ଯେତେବେଳେ ମୋର ମାର୍କିଷ୍ଟ୍ ବନ୍ଧୁଙ୍କୁ ପଚାରିଲି, ସେ କୌଣସି ସନ୍ତୋଷଜନକ ଉତ୍ତର ଦେଇପାରିଲେ ନାହିଁ ।

ହେଗେଲ୍‌ଙ୍କର ଶିଷ୍ୟ ଅନ୍ୟ ପ୍ରକାର ଉତ୍ତର ଦେଲେ । ସେ ଇତିହାସର ଗତି ସମ୍ପର୍କରେ ଆଲୋଚନା କଲେ ଓ କହିଲେ ଯେ, ନିର୍ଦ୍ଦିଷ୍ଟ ଐତିହାସିକ ପରିସ୍ଥିତି ଓ ଲୋକସାଧାରଣଙ୍କର ଅକ୍ଷମତାଯୋଗୁ ବୈଦେଶିକ ରାଜତ୍ୱ ସମ୍ଭବ ହୋଇପାରିଲା ।

ଏ ଉତ୍ତର ମଧ୍ୟ ମୋତେ ସନ୍ତୁଷ୍ଟ କରିପାରିଲା ନାହିଁ । ମାର୍କିଷ୍ଟମାନଙ୍କର ଆଲୋଚନା ଅପେକ୍ଷାକୃତ ଭଲ ହେଲେ ବି ସେ ପରିସ୍ଥିତିର ମୂଳ କାରଣ ସମ୍ପର୍କରେ ହେଗେଲୀୟାନ୍ ବନ୍ଧୁଙ୍କ ପରି ସମାନ ଅଜ୍ଞ । ଆଲୋଚନା ପ୍ରସଙ୍ଗରେ ହୁଏତ ଉଭୟ ବନ୍ଧୁ ସେମାନଙ୍କର ମତାମତକୁ ଆହୁରି ବିସ୍ତାରିତ କରିପାରନ୍ତି । ମାର୍କିଷ୍ଟ୍ ବନ୍ଧୁଙ୍କ ମତରେ ମଣିଷର ଇତିହାସ କେତୋଟି ନିର୍ଦ୍ଦିଷ୍ଟ ପଥ ଧରି ଅଗ୍ରଗତି କରିଛି ଓ ନିର୍ଦ୍ଦିଷ୍ଟ ସମୟରେ ହୁଏତ ଭାରତ ଅନ୍ୟାନ୍ୟ ଦେଶପରି ପରିବର୍ତ୍ତିତ ଓ ସଚେତ ହୋଇପାରି ନାହିଁ । ଏହାଦ୍ୱାରା ଭାରତର ଯାହା ହେଉନା କାହିଁକି, ସମଗ୍ର ମଣିଷଜାତି ଦୃଷ୍ଟିରୁ ଏ ଏକ କ୍ଷୁଦ୍ର ଘଟଣା । ଉତ୍ପାଦନର ପରିବର୍ତ୍ତନ ହେଉଛି ବଡ଼ କଥା ଓ ମଣିଷଜାତି ଏକ ନିର୍ଦ୍ଦିଷ୍ଟ ଉତ୍ପାଦନ ସ୍ତରରୁ ଅନ୍ୟ ସ୍ତରକୁ ଅଗ୍ରସର ହୋଇଛି । ସେ ସମୟରେ ପଶ୍ଚିମ ଇଉରୋପ ଭାରତବର୍ଷ-ଠାରୁ ଆଗରେ ରହି ନେତୃତ୍ୱ ଦେଇପାରିଲା ଓ ସେଇଯୋଗୁ ଭାରତ ସମ୍ପର୍କରେ ମୋ ପ୍ରଶ୍ନର ବିଶେଷ ଗୁରୁତ୍ୱ ନାହିଁ ।

ସେହିପରି ହେଗେଲୀୟ ବନ୍ଧୁ ହୁଏତ କହିପାରନ୍ତି ଯେ, ଭାରତର ନିର୍ଦ୍ଦିଷ୍ଟ ପ୍ରତିଭା ଆଧିଭୌତିକ ବିଶ୍ବର-ଆଲୋଚନାରେ ଓ ନୈଷ୍କର୍ମ୍ୟରେ ନିହିତ । ନୈଷ୍କର୍ମ୍ୟ ଫଳରେ ଅନେକ ସମୟରେ ବିରାଟ ପରିବର୍ତ୍ତନ ସାଧିତ ହୋଇପାରେ ; କିନ୍ତୁ ଅନ୍ୟ ସମୟରେ ଜାତିର ସୃଷ୍ଟିକାରୀ ଶକ୍ତି ନଷ୍ଟ ହୋଇଯାଇଥାଏ । ଏଇସବୁ

ଆଲୋଚନାଦ୍ୱାରା ଇତିହାସର ପ୍ରକୃତ ତଥ୍ୟ ବୁଝିବା ସମ୍ଭବ ନୁହେଁ । ମୂଳ କଥା ହେଲା, କାହିଁକି କେତେକ ନିର୍ଦ୍ଦିଷ୍ଟ କାରଣ ଓ ପରିବେଶ ଏକ ନିର୍ଦ୍ଦିଷ୍ଟ ସମୟରେ କୌଣସି ଏକ ନିର୍ଦ୍ଦିଷ୍ଟ ଦେଶରେ ସମ୍ଭବ ହୋଇପାରୁଛି ଓ ଅନ୍ୟତ୍ର ହୋଇପାରୁ ନାହିଁ । ଯେଉଁମାନେ ମଣିଷଜାତିର ନୀତି-ନିୟମ ଓ ଐତିହାସିକ ପରିବର୍ତ୍ତନ ସମ୍ପର୍କରେ ଆଲୋଚନା କରନ୍ତି, ସେମାନେ ବିଭିନ୍ନ ସମାଜ ଓ ଗୋଷ୍ଠୀର ଉନ୍ନତି ବା ଅବନତି ସମ୍ପର୍କରେ ନିର୍ଦ୍ଦିଷ୍ଟ କାରଣ ନିର୍ଦ୍ଦେଶ କରିବା ଉଚିତ । ତା ଯଦି ସମ୍ଭବ ନ ହେଲା, ତା ହେଲେ ଇତିହାସର କୌଣସି ନୀତି ଓ ନିୟମ ନାହିଁ । ଦୂରରୁ ବାହାର ରୂପ ଜାଣିବା ହୁଏତ ସହଜ, କିନ୍ତୁ ମୂଳ କାରଣ ଜାଣିବା ଅଧିକ ଗୁରୁତ୍ୱପୂର୍ଣ୍ଣ ।

"ମଣିଷ କ'ଣ" ଏ ବିଷୟରେ ଅନେକ ବ୍ୟାଖ୍ୟା ହୋଇଛି । କେତେକ କହନ୍ତି, ମଣିଷ ଏକ ଚିନ୍ତାଶୀଳ ପଶୁ । ପୁଣି କେତେକ କହନ୍ତି, ମଣିଷ ଯନ୍ତ୍ରପାତି ତିଆରି କରିପାରୁଥିବା ପଶୁ । ବାସ୍ତବିକ୍ ମଣିଷ କ'ଣ—ଏ ବିଷୟରେ କୌଣସି ସ୍ପଷ୍ଟ ବ୍ୟାଖ୍ୟା ନାହିଁ ; କିନ୍ତୁ ମଣିଷ ସମ୍ପର୍କରେ ଗୋଟିଏ କଥା ସ୍ପଷ୍ଟ । ସେ ସବୁ ସମୟରେ ନିଜ ସମ୍ପର୍କରେ ଓ ନିଜର ଅନ୍ୟମାନଙ୍କ ସହିତ ସମ୍ପର୍କ ବିଷୟରେ ସଚେତନ । ଏହି ସମ୍ପର୍କ ଅନ୍ୟ ସହିତ କି ଭଗବାନ୍‌ଙ୍କ ସହିତ, ଏହା ଏକ ଗୌଣ ପ୍ରଶ୍ନ । ମୁଖ୍ୟ ପ୍ରଶ୍ନ ହେଲା, ଏହି ସଚେତନତା ଓ ସମ୍ପର୍କନିଷ୍ଠତା ।

ନିଜ ବିଷୟରେ ସଚେତ ହୋଇ ସେ ନିଜେ ଏକାକୀ ଓ ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ, ଏହି ଅନୁଭୂତି ହେବା ସଙ୍ଗେ ସଙ୍ଗେ ମଣିଷ ମନର ଚିନ୍ତାଧାରା ଓ ବିଭିନ୍ନ ଉଦ୍ଦେଶ୍ୟମୂଳକ କାର୍ଯ୍ୟର ଆରମ୍ଭ । ସେ ଜୀବନର ମୂଲ୍ୟ ବୁଝିବାପାଇଁ ସଚେଷ୍ଟ ହୁଏ ଓ କୌଣସି ନା କୌଣସି ସମୟରେ ଇତିହାସ ମାଧ୍ୟମରେ ନିଜ ଚିନ୍ତାଧାରାର ପ୍ରତିଫଳନ ଖୋଜେ । ଏ କଥା ସତ ଯେ, ଜୀବନ-ଧାରାର ବିଭିନ୍ନ ଅବସ୍ଥାରେ ମଣିଷ ନିଜ ବିଷୟରେ ସଚେତ ହେବା ସଙ୍ଗେ ସଙ୍ଗେ ଜୀବନ-ତତ୍ତ୍ୱ ସନ୍ଧାନ କରିବାକୁ ଚେଷ୍ଟା କରିଛି । ତାର ଏହି ସନ୍ଧାନ କେତେଦୂର ସ୍ୱେଚ୍ଛାପ୍ରଣୋଦିତ ବା ସମସାମୟିକ ଆର୍ଥନୀତିକ ରାଜନୈତିକ ପରିସ୍ଥିତିଦ୍ୱାରା ପ୍ରଭାବିତ, ତାହା କହିବା ଅନୁସନ୍ଧାନସାପେକ୍ଷ ; କିନ୍ତୁ ମଣିଷ ସବୁ ସମୟରେ ପ୍ରଶ୍ନ ପଚାରିଛି ଓ ଜୀବନର ଅର୍ଥ ବୁଝିବାକୁ ଚେଷ୍ଟା କରିଛି । ମୁଁ କେଉଁଠୁ ଆସିଲି, ମୁଁ

କେଉଁଠାକୁ ଯିବ, ମୁଁ କାହିଁକି ବଞ୍ଚିରହିଛୁ—ଏହିପରି ବିଭିନ୍ନ ପ୍ରଶ୍ନ ସହିତ ଆମ୍ଭେମାନେ ପରିଚିତ । ଇତିହାସର ଗତି ପର୍ଯ୍ୟାଲୋଚନା କଲେ ଆମ୍ଭେମାନେ ଦେଖୁ ଯେ, ଏହିପରି ବିଭିନ୍ନ ପ୍ରଶ୍ନ ପଚାରିବା ଛଳରେ ମଣିଷ ବହୁ ଅନୁଷ୍ଠାନ ଗଢ଼ିଛି ଓ ଭାଙ୍ଗିଛି, ବହୁ ଯୁଦ୍ଧ ଓ ଶାନ୍ତି ସଂଘଟିତ ହୋଇଛି ଏବଂ ଇତିହାସର ଗତି ଓ ଘଟଣା ମଧ୍ୟରେ ଜୀବନର ଉଦ୍ଦେଶ୍ୟ ଜାଣିବାପାଇଁ ମଣିଷ ବାରମ୍ବାର ଚେଷ୍ଟା କରିଛି ।

ଇତିହାସର ଧାରାରେ ଯେ କୌଣସି ନିୟମ ବା ଶୃଙ୍ଖଳା ଅଛି, ଅନେକ ଐତିହାସିକ ତାହା ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ ଇତିହାସରେ ଯାହା ଘଟେ, ସେ କେବଳ ଆକସ୍ମିକ ଓ ସାମୟିକ ଘଟଣାର ଗୃହରେ ଘଟିଥାଏ । ମନେକର କୌଣସି ଘଟଣା ଘଟିଲା । ଏହା କାହିଁକି ହେଲା, ଏକଥା କେହି ଜାଣନ୍ତି ନାହିଁ । ଅଧିକାଂଶ କ୍ଷେତ୍ରରେ ଯାହା ଘଟିଯାଇଛି, ସେହିସବୁର ତଥ୍ୟ ସଂଗ୍ରହ କରି କୌଣସି ନିର୍ଦ୍ଦିଷ୍ଟ ଘଟଣାର ବର୍ଣ୍ଣନା ଦେବାକୁ ଚେଷ୍ଟା ହୋଇଥାଏ । ଇତିହାସ ହୁଏତ ଉପନ୍ୟାସପରି ସୁଖପାଠ୍ୟ ହୋଇପାରେ , କିନ୍ତୁ ଏହାର କୌଣସି ଉଦ୍ଦେଶ୍ୟ ବା ଶୃଙ୍ଖଳା ନାହିଁ । ଏହା ହିଁ ସେମାନଙ୍କର ମତ । ଏ ମତ ଠିକ୍ କି ଭୁଲ, ସେ କଥା ପଣ୍ଡିତମାନେ ସ୍ଥିର କରିବେ । ମୁଁ ଏପରି ମତବାଦରେ ଆଗ୍ରହୀ ନୁହେଁ; କାରଣ ଏହାଦ୍ୱାରା ଇତିହାସକୁ ମୁଁ ଏକ ଅସ୍ୱାଭାବିକରେ ଗ୍ରହଣ କରିପାରିବି ନାହିଁ । ଇତିହାସ-ଧାରାରେ ସ୍ପଷ୍ଟ ଶୃଙ୍ଖଳା ଓ ସଂଗଠନ ରହିଛି, ଏହା ହିଁ ମୋର ମତ, ଯଦିଓ ବହୁ ବିଦ୍ୱାନ୍ ଲୋକ ହୁଏତ ମୋ ସହିତ ଏକମତ ହେବେ ନାହିଁ ।

ଇତିହାସର ଉଦ୍ଦେଶ୍ୟ ଓ ବିଶ୍ଳେଷଣକୁ ବାଦ ଦେଲେ ବି ସବୁପ୍ରକାର ଐତିହାସିକ ଘଟଣାବଳୀକୁ ଏକତ୍ର ସନ୍ନିବିଷ୍ଟ କରିବା କଷ୍ଟସାଧ୍ୟ, ଏପରି କି କେବଳ ଭାରତର ଇତିହାସକୁ ବୁଝିବା ଖୁବ୍ ସହଜ ନୁହେଁ । ଗୌତମ ବୁଦ୍ଧ ଯେତେବେଳେ ତାଙ୍କ ସମୟର ସର୍ବଶ୍ରେଷ୍ଠ ନର୍ତ୍ତକୀକୁ ଭେଟିଥିଲେ ଓ ସେହି ନର୍ତ୍ତକୀ ତାଙ୍କ ସଂଘର ସଭ୍ୟା ହେଲା, ସେତେବେଳର ଗୌତମବୁଦ୍ଧଙ୍କ ମନୋଭାବ ଜାଣିବାପାଇଁ ମୁଁ ଯଥେଷ୍ଟ ଆଗ୍ରହୀ । ଏହି ବିଦଗ୍ଧା ଓ ବିଚକ୍ଷଣା ନାରୀ ଯେତେବେଳେ ସଂଘରେ ପଶିବାପାଇଁ ପ୍ରାର୍ଥନା କଲା, ସେତେବେଳେ ଗୌତମ ବୁଦ୍ଧ ବିଚଳିତ ହୋଇଥିଲେ କି ନାହିଁ

ଆମ୍ଭେମାନେ ଜାଣୁନା, ଆମ୍ଭମାନଙ୍କ ପକ୍ଷରେ ଜାଣିବା ସମ୍ଭବ ମଧ୍ୟ ନୁହେଁ, ହୁଏତ ବୁଦ୍ଧ ଏକାକୀ ଜାଣିଥିବେ ବା ସେ ନିଜେ ହୁଏତ ଜାଣିପାରି ନଥିବେ ।

ସିଜର୍‌ଙ୍କ ପରିବର୍ତ୍ତେ ଆଣ୍ଟୋନି ଯେତେବେଳେ କ୍ଲିଓପାଟ୍ରାଙ୍କ ହୃଦୟକୁ ଆଚ୍ଛନ୍ନ କଲେ, ସେତେବେଳେ କ୍ଲିଓପାଟ୍ରା କ'ଣ ଭାବୁଥିଲେ ? ଯୀଶୁଖ୍ରୀଷ୍ଟଙ୍କର ମ୍ୟାଗ୍‌ଡାଲିନ୍ ସହିତ ସମ୍ପର୍କ କ'ଣ ? ଏହି ପ୍ରସିଦ୍ଧ ବ୍ୟକ୍ତିମାନେ ବିଭିନ୍ନ ସମୟରେ ଇତିହାସର ଗତିକୁ ବିଭିନ୍ନ ମାର୍ଗରେ ପ୍ରଭାବିତ କରିଛନ୍ତି; କିନ୍ତୁ ନିର୍ଦ୍ଦିଷ୍ଟ ଘଟଣା ସମୟରେ ସେମାନଙ୍କର ନିର୍ଦ୍ଦିଷ୍ଟ ଅନୁଭୂତି ସବୁ ଇତିହାସର ଅଜଣା ହୋଇ ରହିଗଲା ।

ଭାରତରେ ଜାତିପ୍ରଥା କିପରିଭାବରେ ଆରମ୍ଭ ହେଲା ଓ ବିଭିନ୍ନ ସମୟରେ ବିଭିନ୍ନ ଯୁଦ୍ଧ ବିଗ୍ରହ ମଧ୍ୟଦେଇ ବିଜିତ ଜାତିମାନେ ନୀତିଗଠନରେ ଗୃହୀତ ହେଲେ କି ନାହିଁ, ଏହା ବର୍ତ୍ତମାନ ସୁଦ୍ଧା ବିଶେଷ ଆଲୋଚନାର ବସ୍ତୁ ହୋଇ ରହିଛି । ଏହି ପୃଥିବୀରେ ବିଭିନ୍ନ ଜାତିର ଆରମ୍ଭ ସମୟର ଘଟଣାସବୁ ବହୁ ରହସ୍ୟମୟ, ଅଲୌକିକ ପୁରାଣ କଥାରେ ଆଚ୍ଛନ୍ନ ହୋଇ ରହିଛି । ବିଭିନ୍ନ ଜାତିର ସଂଘର୍ଷ, ମିଶ୍ରଣ, ସ୍ଥାନତ୍ୟାଗ ଓ ପ୍ରତିଷ୍ଠାର ଘଟଣା ସବୁ ଆମ୍ଭେମାନେ ବିକ୍ଷିପ୍ତ ସାହିତ୍ୟିକ ଓ ନୃତତ୍ତ୍ୱର ସାକ୍ଷ୍ୟ-ପ୍ରମାଣରୁ ପାଇଥାଉ ; କିନ୍ତୁ ଅଧିକାଂଶ କ୍ଷେତ୍ରରେ ଏହି ଘଟଣାସବୁ କେବଳ କଳ୍ପନାରେ ରଞ୍ଜିତ । ମଣିଷଜାତି ଇତିହାସ ଆଲୋଚନା କରିବା ସମୟରେ ଏ କଥା ମନେ ରଖିବା ଉଚିତ ଯେ, ଐତିହାସିକ ଅନୁସନ୍ଧାନ ଘଟଣାର ଆବିଷ୍କାର ଉପରେ ନିର୍ଭର କରେ ଓ ଅନେକ କ୍ଷେତ୍ରରେ ଏପରି ଆବିଷ୍କାର ଆଦୌ ସମ୍ଭବ ନୁହେଁ । ଏହା ବ୍ୟତୀତ ଐତିହାସିକ ସାକ୍ଷ୍ୟ ପ୍ରମାଣରେ ମଧ୍ୟ ବହୁ ଅସାମଞ୍ଜସ୍ୟ ରହିଛି । ଇତିହାସର ବାହ୍ୟ ପ୍ରମାଣ ସମ୍ପର୍କରେ ଆମ୍ଭେମାନେ ଯେତେବେଳେ ଅନିଶ୍ଚିତ, ସେତେବେଳେ ଖୁବ୍ ସୂକ୍ଷ୍ମ, ଅସ୍ପଷ୍ଟ, ଅଥଚ ଇତିହାସର ଗତିକୁ ପ୍ରଭାବିତ କରୁଥିବାପରି ଖୁବ୍ ଗୁରୁତ୍ୱପୂର୍ଣ୍ଣ ଅନୁଭୂତି ସମ୍ପର୍କରେ ଆମ୍ଭମାନଙ୍କର ଧାରଣା ଆହୁରି ଅନିଶ୍ଚିତ ଓ ଅସ୍ଥିର ; କିନ୍ତୁ ସବୁ ପ୍ରକାର ସୀମାବନ୍ଧନ ସତ୍ତ୍ୱେ ଇତିହାସର ଅନୁସନ୍ଧାନ ବ୍ୟାହତ ନ ହେବା ଉଚିତ ।



# ଚକ୍ରାକାର ଓ ମିଥ୍ୟା-ଚକ୍ରାକାର ମତବାଦ

ଇତିହାସର ଚକ୍ରାକାର ମତବାଦ ଭାରତୀୟମାନଙ୍କୁ ବେଶ୍ ଜଣା । ଏହି ମତବାଦ ଅନୁଯାୟୀ ସମୟ ବା କାଳ ଚାରୋଟି ଯୁଗରେ ବିଭକ୍ତ । ସତ୍ୟଯୁଗରୁ ଆରମ୍ଭ ହୋଇ କଳିଯୁଗରେ ଏହା ଶେଷ ଓ ଉଭୟ ମଧ୍ୟରେ ତ୍ରେତା ଓ ଦ୍ୱାପର ଯୁଗ ଅର୍ଥାତ୍ ସୁବର୍ଣ୍ଣଯୁଗର ଶେଷ ହେଉଛି ଏକ ଅନ୍ଧକାର ଯୁଗରେ ।

ସମୟକ୍ରମରେ ଇତିହାସର ଉଭୟ ଉତ୍‌ଥାନ ଓ ପତନ ଅଛି—ଏହା ହିଁ ବିଶ୍ୱାସ ଓ ଥରେ ନିମ୍ନତମ ଦେଶକୁ ଅବତରଣ କଲାପରେ ପୁଣି ସ୍ୱାଭାବିକ ଭାବରେ ଆରୋହଣ ଆରମ୍ଭ ହେବ । ମଣିଷ ଜାତିର ବାସ୍ତବ ଜୀବନ ସହିତ ଏହାର ସାମଞ୍ଜସ୍ୟ ରହିଛି । କୌଣସି ଜାତି ବା ଗୋଷ୍ଠୀ ଦୁଃସମୟ ସହିତ ସଂଗ୍ରାମ କରି ବିଜୟୀ ହେଲାପରେ ଏବଂ ଗୌରବ, ଶକ୍ତି, ସତ୍ୟ ଓ ସୌନ୍ଦର୍ଯ୍ୟର ଶିଖରଦେଶକୁ ଆରୋହଣ କଲାପରେ, ଏହି ଆରୋହଣ-କ୍ଷମ ଶକ୍ତିର ଅପଚୟ ଘଟେ । ପରେ ପରେ ଅବତରଣ ଆରମ୍ଭ ହୁଏ । ଶକ୍ତି ପରିବର୍ତ୍ତେ ଦୁର୍ବଳତା ଓ ଉଦ୍ଦେଶ୍ୟ ପରିବର୍ତ୍ତେ ଉଦ୍ଦେଶ୍ୟହୀନତା ସ୍ପଷ୍ଟ ହୋଇଉଠେ । ଏହା ହିଁ ଅନ୍ଧକାରର ପରିବେଶ ; କିନ୍ତୁ ଏହି ପରିବେଶ ପୁଣି ସ୍ୱାଭାବିକ ଭାବରେ ଶେଷ ହୋଇଆସେ, ଆତ୍ମାର ଶକ୍ତି ବିକଶିତ ହୋଇଉଠେ ଓ ପୁଣି ଥରେ ଆଲୋକ ଉଦ୍ଦେଶ୍ୟରେ ଆରୋହଣ ଆରମ୍ଭ ହୁଏ ।

ଇତିହାସ ସଂପର୍କରେ ଏହାହିଁ ପରିଚିତ ଦ୍ୱନ୍ଦ୍-ମତବାଦ ଓ ଏହି ମତବାଦ ସହିତ ଧର୍ମ ଓ ଆଦର୍ଶର ସମ୍ପର୍କ ରହିଛି ।

ଏହା ଫଳରେ ଜୀବନର ଚିରସ୍ଥାୟୀ ବସ୍ତୁମାନଙ୍କ ପାଇଁ ଆଗ୍ରହ ଆସିଛି; କିନ୍ତୁ କ୍ଷଣସ୍ଥାୟୀ ବସ୍ତୁମାନଙ୍କ ପ୍ରତି ସମାନ ଆଗ୍ରହ ଓ ଅନେକ ସମୟରେ ଭାରତୀୟ ମନ ଅକ୍ଷମତାରେ ପୀଡ଼ିତ ହୋଇପଡ଼ୁଛି । ଇତିହାସ ସମ୍ପର୍କରେ ଏହି ଚକ୍ରୀୟ ଓ ସମ୍ବନ୍ଧ ମତର ବ୍ୟାଖ୍ୟାକାରମାନେ ବିଭିନ୍ନ ଅର୍ଥର ଅବତାରଣା କରିଛନ୍ତି । ଫଳରେ ଏଇ ଚୂତୁଯୁଗର ମତବାଦ ତାର ମୌଳିକ ଅର୍ଥରୁ ବିଚ୍ୟୁତ ହୋଇ କ୍ରମନିମ୍ନଗାମୀ ବିଖଣ୍ଡିତ ସତ୍ୟତାରେ ବିଭକ୍ତ ହୋଇଛି । ବିଭିନ୍ନ ଯୁଗର ନାମକୁ ଏକଠାରୁ ଚାରି ପର୍ଯ୍ୟନ୍ତ ସଂଖ୍ୟା ସହିତ ଜଡ଼ିତ କରିଯାଇଛି; ଅର୍ଥାତ୍ କଳି ପ୍ରଥମ ସହିତ ଓ ସତ୍ୟ ଚତୁର୍ଥ ସହିତ କଳନା କରିଯାଇଛି । ଇତିହାସର ଗତି ଯେଉଁଠି ଚକ୍ରର ଗତିପରି ବୋଲି ବିଶ୍ୱାସ କରାଯାଉଛି, ସେଠାରେ ଏପରି ବିଭିନ୍ନ ବ୍ୟାଖ୍ୟାସବୁ ଭ୍ରମାତ୍ମକ ।

ଅସଲ କଥା ହେଉଛି, ଏହି ମତବାଦରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ ଭଲ ବା ଖରାପ ହେଉ କ୍ଷଣସ୍ଥାୟୀ ବସ୍ତୁମାନଙ୍କୁ ଯଥେଷ୍ଟ ଗୁରୁତ୍ୱ ଦେଇ ଆଲୋଚନା କରୁଛନ୍ତି । ଖରାପ ଅବସ୍ଥା ବେଶୀଦିନ ରହିବ ନାହିଁ ଓ ଖରାପ ଅବସ୍ଥାରେ ଥିବା ଜାତି ପୁଣି ସମୟକ୍ରମେ ଭଲ ଅବସ୍ଥାକୁ ଉଠିପାରିବ । ଏହି ଚାରୋଟି ଯୁଗର ନିର୍ଦ୍ଦିଷ୍ଟ ସୀମା ରହିଛି; କିନ୍ତୁ ଏଇ ସମୟସୀମା ଇତିହାସର ସତ୍ୟ ନୁହେଁ ବରଂ କବିର କଳ୍ପନା ସୂଚିତ କରେ । ଭାରତୀୟ ଋଷିମାନେ ପ୍ରତି ନିମ୍ନତମ ଯୁଗକୁ ତାର ପୂର୍ବତମ ଉଚ୍ଚତର ଯୁଗରୁ ଅର୍ଦ୍ଧେକ ସମୟମାନ ଦେଇଛନ୍ତି । ଏହାଦ୍ୱାରା ଭାରତୀୟ ମନର ଗୌରବ ପ୍ରକାଶ ପାଏ ।

ଇତିହାସର ଚକ୍ରାକାର ମତବାଦ କେବଳ ଭାରତରେ ସୀମାବଦ୍ଧ ନୁହେଁ । ବର୍ତ୍ତମାନ ଶତାବ୍ଦୀର ପଶ୍ଚିମ ଇଉରୋପ ଓ ଆମେରିକାରେ ଏହି ମତବାଦର କେତେକ ମିଶ୍ରିତ ରୂପ ଲକ୍ଷ୍ୟ କରିଯାଇପାରେ । ମନେହୁଏ, ସଭ୍ୟତାର ପରିଣତ ଅବସ୍ଥା ସହିତ ବା ଅବକ୍ଷୟ ସହିତ ଏହି ମତବାଦର ସମ୍ପର୍କ ରହିଛି । ପ୍ରଚଣ୍ଡ ଯୌବନର ଅବସ୍ଥାସହିତ ସତେ ଯେପରି ଏହାର ସମ୍ପର୍କ ନାହିଁ । ବର୍ତ୍ତମାନ ମଣିଷ ସଭ୍ୟତାର ଏହି ଅଗ୍ରଗତିରେ ଏକ ନିୟମିତ ଶୃଙ୍ଖଳାର ଆବିଷ୍କାର ପାଇଁ ଚେଷ୍ଟା ହେଉଛି ।

ଅନେକ କହନ୍ତି ଯେ, କୌଣସି ସଭ୍ୟତାର ଜୀବନ ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଚିତ୍ରଶିଳ୍ପ ଓ ସଙ୍ଗୀତର କ୍ରମଃଉତ୍କର୍ଷତା ସହିତ ଜଡ଼ିତ । ଏହା ସହିତ ପୁଣି ଅନେକ ମଣିଷ ଜାତିର ଇତିହାସକୁ ଜଡ଼ିତ କରନ୍ତି ଓ ସେମାନଙ୍କ ମତରେ ପ୍ରଥମ ସଭ୍ୟତାରେ ମୁଖ୍ୟତଃ ସ୍ଥାପତ୍ୟ ଓ ବର୍ତ୍ତମାନ ସଭ୍ୟତାରେ ସଙ୍ଗୀତର ପ୍ରାଧାନ୍ୟ ବେଶୀ । ହୁଏତ ସଭ୍ୟତାର ଆଲୋଚନାରେ କଳାର ଉତ୍ଥାନ ପତନର କଥା ଚିନ୍ତା କରିଯାଇପାରେ; କିନ୍ତୁ ଏଥିରେ ଯେ ସବୁ ସମୟରେ ଏକ ନିର୍ଦ୍ଦିଷ୍ଟ ଶୃଙ୍ଖଳା ବା ଛନ୍ଦ ରହିଛି, ଏକଥା ଭାବିବା ଭୁଲ । ସେହିପରି ବିଭିନ୍ନ ସଭ୍ୟତାରେ ନିର୍ଦ୍ଦିଷ୍ଟ ସମୟକୁ ଏକାଠି କରିବାର ଯେଉଁ ମନୋଭାବ, ତାହା ବି ଠିକ୍ ନୁହେଁ; ଅର୍ଥାତ୍ କୌଣସି ସଭ୍ୟତାର ପରିଣତ ଅବସ୍ଥା ସେଇ ସଭ୍ୟତାର ମୂଳ ଅବସ୍ଥା ପରିବର୍ତ୍ତେ ଅନ୍ୟ ଏକ ସଭ୍ୟତାର ପରିଣତ ଅବସ୍ଥା ସହିତ ସମ୍ପର୍କିତ ବୋଲି ଅନେକଙ୍କର ମତ । ଏହି ଦୁଇ ସଭ୍ୟତା ଭିତରେ ହୁଏତ ହଜାର ବର୍ଷର ବ୍ୟବଧାନ ଥାଇପାରେ; ତଥାପି ଏହି ଦୁଇ ବିଭିନ୍ନ ସଭ୍ୟତାର ଭାଷା, ଆଚାର ବିଚାର, ଜୀବନ-ଯାପନ ପ୍ରଣାଳୀ ବା ଜୀବନର ଉଦ୍ଦେଶ୍ୟ ଏକଭାବରେ ବିକଶିତ ହେବା ସମ୍ଭବ ବୋଲି ଅନେକଙ୍କର ମତ । ଏପରି କି ନିର୍ଦ୍ଦିଷ୍ଟ ସଭ୍ୟତା ସବୁ କେତେଥର ଜୀବନର ସମସ୍ୟା ସହିତ ମୁହାଁମୁହିଁ ହୋଇପାରିବ, ସେକଥା ବି ବ୍ୟାଖ୍ୟାକାରମାନେ ହିସାବ କରି ମତାମତ ଦେଇଛନ୍ତି । ମଣିଷ ଇତିହାସର ଦର୍ଶନ ଜ୍ୟୋତିଷଶାସ୍ତ୍ରପରି ହେବାକୁ ବସିଲାଣି । କିନ୍ତୁ ଇତିହାସର ବ୍ୟାଖ୍ୟାକାରମାନେ ମନେ ରଖିବା ଉଚିତ ଯେ, ଜନ୍ମ ହେଲେ ମରଣ ନିଶ୍ଚିତ—ଏହା ମଣିଷର ଇତିହାସ ଓ ସଭ୍ୟତା ସଂସ୍କୃତି ପାଇଁ ଏକମାତ୍ର ସତ୍ୟ ନୁହେଁ । ମୃତ୍ୟୁ ହେଲେ ଜନ୍ମ ନିଶ୍ଚିତ ଏ ବି ପରମ ସତ୍ୟ ।

ଇତିହାସର ଏସବୁ ଚକ୍ରାକାର ମତବାଦ-ଦର୍ଶନକୁ ସମସ୍ତେ ସମାନଭାବରେ ଗ୍ରହଣ ନ କଲେ ବି ସମୟ କ୍ରମରେ ପୂର୍ବବର୍ତ୍ତୀ ରୈଖିକ ମତବାଦ ଠାରୁ ଏହା ଅଧିକତର ବ୍ୟକ୍ତିନିରପେକ୍ଷ । ଆମର ସମସାମୟିକ ଶତାବ୍ଦୀ ମଣିଷ-ଜାତିର ଇତିହାସରେ ଶେଷ କଥା, ଏହା ବିଭିନ୍ନ ସମୟରେ ହୁଏତ ଚିନ୍ତା କରାଯାଇଛି ; କିନ୍ତୁ ଏପରି ଚିନ୍ତା ଭ୍ରମାତ୍ମକ । ସେହିପରି ପଶ୍ଚିମ ସଭ୍ୟତା ସମସ୍ତ ପୃଥିବୀର କେନ୍ଦ୍ରବିନ୍ଦୁ ଓ ସମସ୍ତ ପୂର୍ବବର୍ତ୍ତୀ ଓ ସମସାମୟିକ

ସଭ୍ୟତାର ପରିମାପକ, ଏଇ ଚିନ୍ତା ମଧ୍ୟ ସମାନ ଭ୍ରମାତ୍ମକ । ପଶ୍ଚିମ ଇଉରୋପ ଓ ଆମେରିକାର ଉନ୍ନତ ବିଶ୍ୱବିଦ୍ୟାଳୟରେ ଏପରି ମନୋଭାବ କ୍ରମଶଃ ପରିତ୍ୟକ୍ତ ହେଉଛି । ପୃଥିବୀର ଇତିହାସକୁ ପ୍ରାଚୀନ, ମଧ୍ୟବର୍ତ୍ତୀ ଓ ଆଧୁନିକ ଯୁଗମାନଙ୍କରେ ବିଭକ୍ତ କରିବା ଓ ଏହି କ୍ରମରେ ଋଜୁ ବା ଭଗ୍ନ ଉନ୍ନତିର ସୂଚନା ଦେବା କେବଳ ସାଂସ୍କୃତିକ ଆତ୍ମମତା । ସ୍ପେଙ୍ଗଲର୍, ଟଏନ୍‌ବି, ନର୍ଥ୍ରପ ଓ ସୋରକିନ୍ ପ୍ରଭୃତି ସେମାନଙ୍କର ବିଭିନ୍ନ ଭୁଲ ଭ୍ରାନ୍ତି ସତ୍ତ୍ୱେ ଏହି ଏକଦେଶଦର୍ଶୀ ଆତ୍ମମତା ବିରୁଦ୍ଧରେ ଯୁକ୍ତିସମ୍ମତ ଆଲୋଚନା-ମାନ କରିଛନ୍ତି ଓ ଇତିହାସର ବିଶ୍ଳେଷଣରେ ସେମାନଙ୍କର ଆଲୋଚନାମାନ ଯଥେଷ୍ଟ ଫଳପ୍ରଦ ।

ଯେଉଁସବୁ ବିଭିନ୍ନ ଗୁଣର ମିଶ୍ରଣରେ ସଂସ୍କୃତିର ଉଦ୍ଭବ ହୁଏ, ସେସବୁର ଆଲୋଚନା ବିଭିନ୍ନ ଓ ବିଚ୍ଛିନ୍ନ ଭାବରେ କରାଯାଇଛି । ବୁଦ୍ଧି ଓ ପର୍ଯ୍ୟବେକ୍ଷଣ ଉପରେ ପ୍ରତିଷ୍ଠିତ ବର୍ତ୍ତମାନର ସଂସ୍କୃତି ସହିତ ସ୍ପେଙ୍ଗଲର୍ ଅତୀତର ସହଜ ଜ୍ଞାନପ୍ରସୂତ ସଂସ୍କୃତିକୁ ତୁଳନା କରିଛନ୍ତି । ନର୍ଥ୍ରପ ମଧ୍ୟ ସେହିପରି ସଂସ୍କୃତିର ତଥ୍ୟ ବିଜ୍ଞାନ-ମୂଳକ ଅନୁଭବରୁ ସହଜ ଜ୍ଞାନ-ସୌନ୍ଦର୍ଯ୍ୟବୋଧ-ମୂଳକ ଜ୍ଞାନକୁ ଅଲଗା କରି ଆଲୋଚନା କରିଛନ୍ତି ଓ ତାଙ୍କ ମତରେ ପ୍ରଥମ ଅନୁଭବ ପଶ୍ଚିମରେ ଓ ଦ୍ୱିତୀୟ ଅନୁଭବ ପୂର୍ବରେ ପ୍ରାଧାନ୍ୟ ଲାଭ କରିଛି ।

ସୋରକିନଙ୍କର ଆଲୋଚନା ଏସବୁ ଆଲୋଚନାଠାରୁ ଉତ୍କୃଷ୍ଟତର ବୋଲି ମନେହୁଏ । ସେ ସଂସ୍କୃତିର ବିଭିନ୍ନ ଗୁଣକୁ ଦିବ୍ୟଦୃଷ୍ଟିମୂଳକ, ଆଦର୍ଶମୂଳକ ଓ ଅନୁଭୂତିମୂଳକ ଏହିପରି ତିନି ଭାଗରେ ବିଭକ୍ତ କରିଛନ୍ତି । ଏସବୁ ଗୁଣ ପରସ୍ପର ସହିତ ସଂଘର୍ଷରେ ଲିପ୍ତ, ଏପରି ଭାବିବା ଭୁଲ । ଯେକୌଣସି ସଂସ୍କୃତିରେ ଏସବୁ ଗୁଣ ଏକାଠି ଦେଖାଯାଏ । କେଉଁ ଗୁଣର ଗୁରୁତ୍ୱ କେଉଁ ସମୟରେ କେଉଁ ସଂସ୍କୃତିରେ କେତେ, ତାହା ହିଁ ଲକ୍ଷ୍ୟ କରିବାର କଥା । କେବଳ ଯେ ଦୁଇ ସଭ୍ୟତା ମଧ୍ୟରେ ଦୁଇ ଗୁଣର ପାର୍ଥକ୍ୟ ଲକ୍ଷ୍ୟ କରାଯାଇପାରେ, ତା ନୁହେଁ । ଗୋଟିଏ ସଭ୍ୟତାର ବିଭିନ୍ନ ଅବସ୍ଥା ମଧ୍ୟରେ ଏହି ପାର୍ଥକ୍ୟ ରହିଛି । ହୁଏତ କୌଣସି ଗୋଷ୍ଠୀ ତାର ଇତିହାସ ମାଧ୍ୟମରେ କୌଣସି ନିର୍ଦ୍ଦିଷ୍ଟ ଗୁଣକୁ ଅନ୍ୟାନ୍ୟ ଗୁଣଠାରୁ ଅଧିକତର ସଂସ୍କୃତ କରିଥାଏ । ଉଦାହରଣ ସ୍ୱରୂପ ଭାରତୀୟମାନେ

ସହଜ ଜ୍ଞାନ-ସୌନ୍ଦର୍ଯ୍ୟବୋଧମୂଳକ ସଂସ୍କୃତିରେ ଅଧିକତର ବିଶ୍ୱାସୀ, ଏହାଙ୍କ ସଚରାଚର ବିଶ୍ୱାସ ।

ସଂସ୍କୃତିରେ ପରିବର୍ତ୍ତନର ଧାରା ସ୍ଥିର କରିବାପାଇଁ ଅନେକ ତଥ୍ୟ ସଂଗ୍ରହ କରାଯାଇଛି । ସହଜଜ୍ଞାନ ପ୍ରସୂତ ସଂସ୍କୃତିଠାରୁ ଯୁକ୍ତିମୂଳକ ସଂସ୍କୃତିରେ ପରିବର୍ତ୍ତନର ଧାରା ଦ୍ରୁତତର । ଗୋଟିଏ ସଂସ୍କୃତିରେ ଅନ୍ୟ ଗୋଟିଏ ସଂସ୍କୃତିର ମିଶ୍ରଣର ସମ୍ଭାବନା ମଧ୍ୟ ଆଲୋଚନା କରାଯାଇଛି । ଏଇସବୁ ଦାର୍ଶନିକମାନେ ଇତିହାସର ବିଶ୍ଳେଷଣ ପାଇଁ ଓ ଇତିହାସକୁ ବୁଝିବାପାଇଁ ବହୁ ଆଲୋଚନା କରିଛନ୍ତି । ଏ ସବୁ ମତବାଦ ସଂପୂର୍ଣ୍ଣଭାବରେ ଇତିହାସର ଚକ୍ରାକାର ପୁନରାବୃତ୍ତିକୁ ସମର୍ଥନ କରନ୍ତି ନାହିଁ ଓ ଏହି ବିଦଗ୍ଧ ବ୍ୟାଖ୍ୟାକାରମାନେ ବର୍ତ୍ତମାନର ପରିଣତ ସଭ୍ୟତାର ଜଞ୍ଜାଳ ମାଧ୍ୟମରେ ଉଚିତ ମାର୍ଗ ନିର୍ଦ୍ଦେଶ କରିବାରେ ଚେଷ୍ଟିତ । ଏପରି କି ସ୍ପେଙ୍ଗଲର୍ ବର୍ତ୍ତମାନ ସଭ୍ୟତାର ପରିବ୍ୟାପ୍ତ ଅନ୍ଧକାର ମଧ୍ୟରୁ ଉଦ୍ଧାରର ଉପାୟ ଅନୁସନ୍ଧାନ କରିବାକୁ ଚେଷ୍ଟା କରିଛନ୍ତି ; କିନ୍ତୁ ଏଇସବୁ ଆଲୋଚନାମାନଙ୍କରେ ଗୋଟିଏ କଥା ବିଶେଷ କରି ଲକ୍ଷ୍ୟ କରାଯାଏ ।

ମନେହୁଏ, ଯେପରି ବ୍ୟାଖ୍ୟାକାରମାନେ ସମ୍ମିଶ୍ରଣ ବା ଏକନିଷ୍ଠା ନାମରେ ବିଭିନ୍ନ ବିଚ୍ଛିନ୍ନ ଗୁଣକୁ ଏକତ୍ର କରିବାକୁ ଯାହା ଉଦ୍ୟମ କରୁଛନ୍ତି, ତାହା ଯୁକ୍ତିସମ୍ମତ ନୁହେଁ, ସହଜ ଜ୍ଞାନମୂଳକ ମଧ୍ୟ ନୁହେଁ । ସେମାନେ ହୁଏତ ସମ୍ମିଶ୍ରଣ ବା ଏକନିଷ୍ଠା ସମ୍ବନ୍ଧରେ ଅବହିତ ; କିନ୍ତୁ ଏକନିଷ୍ଠାର ବିଶେଷ ପ୍ରମାଣ ସେମାନଙ୍କ ଲେଖାରେ ନାହିଁ ଓ ଯୁକ୍ତିମୂଳକ ଗୁଣସବୁ ଅଦ୍ଭୁତ ଭାବରେ ମିଶ୍ରିତ ହୋଇପାଇଛି । ବର୍ତ୍ତମାନ ସଭ୍ୟତାର ତଥ୍ୟମୂଳକ ଗୁଣସବୁକୁ ଯେପରି ଭାବରେ ପୂର୍ବବର୍ତ୍ତୀ ସଭ୍ୟତାର ସହଜଲବ୍ଧ ଜ୍ଞାନ ସହିତ ଜଡ଼ିତ କରାଯାଇଛି ବା ପୂର୍ବ ଦେଶର ତଥାକଥିତ ଆଧ୍ୟାତ୍ମିକତାକୁ ପଶ୍ଚିମ ଦେଶମାନଙ୍କରେ ବିଜ୍ଞାନ ସହିତ ମିଶ୍ରିତ କରାଯାଇଛି, ତାହା ଆଦୌ ସମର୍ଥନଯୋଗ୍ୟ ନୁହେଁ ।

ମମ୍‌ଫୋର୍ଡ ଓ ମାର୍ଟିନ ବବରଙ୍କ ଲେଖାରେ ଇତିହାସର ବିଭିନ୍ନ ମତବାଦକୁ ମିଳିତ କରିବାର ଚେଷ୍ଟା ଅନ୍ୟମାନଙ୍କଠାରୁ ଅଧିକତର

ସ୍ପଷ୍ଟ ଭାବରେ ଦେଖାଯାଏ । ତଥାପି ସେମାନଙ୍କ ଆଲୋଚନାରେ ସୌନ୍ଦର୍ଯ୍ୟ-ବୋଧ ବା ଧର୍ମତତ୍ତ୍ୱର ଅଧିକତର ପ୍ରାଧାନ୍ୟ ରହିଛି ଓ ସେସବୁ ଠିକ୍ ଯୁକ୍ତିସମ୍ମତ ଭାଷାରେ ସବୁ ସମୟରେ ପ୍ରକାଶ ପାଇନାହିଁ । କିନ୍ତୁ ଇଉରୋପୀୟ ବୁଦ୍ଧିଜୀବୀ ମମ୍‌ଫୋର୍ଡ଼ କିଂବା ବିଦରଙ୍କଠାରୁ ସ୍ପେଙ୍ଗଲର୍ ଓ ଟଏନ୍‌ବିଙ୍କ ପ୍ରତି ଅଧିକତର ଆଗ୍ରହଶୀଳ । ଏହାର କାରଣ ବୋଧହୁଏ ପ୍ରତି ସଂସ୍କୃତିରେ ଅନ୍ତର୍ନିହିତ ଆତ୍ମପ୍ରେମ ଓ ବିଶେଷକରି ଏହି ଆତ୍ମପ୍ରେମକୁ ଏକ ବିଷଣ୍ଣ ଓ ହତାଶାପୂର୍ଣ୍ଣ ଚେଷ୍ଟା ମାଧ୍ୟମରେ ରକ୍ଷା କରିବାର ଇଚ୍ଛାରେ ନିହିତ । ଯେଉଁ ଆତ୍ମଦୃଷ୍ଟି ନିଜର ପରିସର ବାହାରକୁ ଯାଇ ଜୀବନର ବିଭିନ୍ନ ସ୍ତର ସଂପର୍କରେ ସଚେତନ ହୋଇଉଠେ, ସେଇ ଆତ୍ମଦୃଷ୍ଟି ପ୍ରାୟ ସଚରାଚର ଦେଖାଯାଏ ନାହିଁ ।

ଅନେକ ସମୟରେ ଐତିହାସିକ ମତବାଦ ସବୁ ଠିକ୍ ଫେସନ ପରି କିଛି ସମୟ ପର୍ଯ୍ୟନ୍ତ ଲୋକମାନଙ୍କୁ ଆକୃଷ୍ଟ କରେ ଓ ତାପରେ ଲୋପ ପାଇଯାଏ । ପଶ୍ଚିମ ସଭ୍ୟତାର ପତନ ସଂପର୍କରେ ସ୍ପେଙ୍ଗଲର୍‌ଙ୍କ ମତାମତ ଏହିପରି ଏକ ଅବସ୍ଥାର ସୂଚନା ଦିଏ । ତାଙ୍କ ମତରେ ସଂସ୍କୃତି ଓ ପ୍ରତି ସଭ୍ୟତା ଜନ୍ମ, ଯୌବନ ଓ ବାର୍ଦ୍ଧକ୍ୟ ଅବସ୍ଥା ବା ବସନ୍ତ, ଗ୍ରୀଷ୍ମ, ଶରତ ଓ ଶୀତର ବିଭିନ୍ନ ପରିଣତି ମଧ୍ୟଦେଇ ଗତିକରେ । ପରିଶେଷରେ ପ୍ରତି ସଂସ୍କୃତି ଗୋଟିଏ ସାଧାରଣ ସଭ୍ୟତାରେ ରୂପାନ୍ତରିତ ହୁଏ ଓ କ୍ରମେ କ୍ରମେ ଆତ୍ମ-ବିନାଶ କରି ମୃତ୍ୟୁ ମୁଖରେ ପତିତ ହୁଏ ଏବଂ ଅନ୍ୟ ଏକ ନୂତନ ସଂସ୍କୃତି ଏଇ ମୃତ ସଂସ୍କୃତିର ସ୍ଥାନ ଅଧିକାର କରେ ।

ସ୍ପେଙ୍ଗଲର୍‌ଙ୍କ ଆଲୋଚନାରୁ ଗୋଟିଏ ନିର୍ଦ୍ଦିଷ୍ଟ ଉଦାହରଣ ଦିଆଯାଇପାରେ । ତାଙ୍କ ମତରେ କୌଣସି ଗୋଷ୍ଠୀ ଉନ୍ନତି କଲେ ସଂସ୍କୃତିବନ୍ତ ହୁଏ । କିନ୍ତୁ ଗୋଷ୍ଠୀର ପତନରେ ସଂସ୍କୃତିକୁ ଏକ ସାଧାରଣ ସଭ୍ୟତା ରୂପରେ ଲକ୍ଷ୍ୟ କରିହୋଇ ପାରେ । ଉଦାହରଣ ସ୍ୱରୂପ ସଂସ୍କୃତିସମୃଦ୍ଧ ଜାତି ଏକତଳ ବା ଦ୍ୱିତଳ ଅଟ୍ଟାଳିକା ନିର୍ମାଣ କରିଥାଏ, ଯେପରି କି ଏଇସବୁ ବାସଗୃହ ଘରପାଖର ପ୍ରକୃତି ସହିତ ମିଶିଯାଇପାରିବ; କିନ୍ତୁ ସଭ୍ୟତାର ସାଧାରଣତାରେ ଜାତି ପଞ୍ଚତଳ, ଷଷ୍ଠତଳ ବା ବହୁତଳବିଶିଷ୍ଟ ପ୍ରାସାଦ ନିର୍ମାଣ କରେ ଓ ଏହି ଅଟ୍ଟାଳିକା ସବୁ ମାତା ବସୁନ୍ଧରା ପ୍ରତି ଠିକ୍ ବ୍ୟଙ୍ଗଭରା ପରି ।

ପଶ୍ଚିମ ସଭ୍ୟତାର ଇତିହାସ ସମ୍ପର୍କରୁ ଦର୍ଶନମାନଙ୍କରୁ ସଭ୍ୟତାର ଉନ୍ନତିରେ ରୈଖିକ ବା ଭଗ୍ନ ଧାରାରେ ବିଶ୍ୱାସ କରନ୍ତି । ଯେଉଁମାନେ ଆରମ୍ଭରୁ ଏକ ସୁବର୍ଣ୍ଣ ଯୁଗରୁ କ୍ରମଶଃ ଏକ ନିରବଚ୍ଛିନ୍ନ ଅବନତିର କଥା କହିଛନ୍ତି, ସେମାନଙ୍କର ବିଶେଷ ଗୁରୁତ୍ୱ ନାହିଁ । ଯନ୍ତ୍ରସଭ୍ୟତାର ପରିବର୍ତ୍ତନ ଓ ଉନ୍ନତି ଯାହାକି ପଶ୍ଚିମ ସଭ୍ୟତା ଓ ପଶ୍ଚିମର ପୁଞ୍ଜିବାଦୀ ଅର୍ଥନୀତିର ସବୁଠାରୁ ବଡ଼କଥା, ପଶ୍ଚିମର ମଣିଷକୁ ତାର ଭବିଷ୍ୟତ ଉପରେ ଏକ ପ୍ରଚଣ୍ଡ ବିଶ୍ୱାସ ଆଣି ଦେଇଛି । ଯଦି ମଣିଷ ନିଜର ସ୍ୱାର୍ଥପାଇଁ ଚେଷ୍ଟା କରେ ଓ ସବୁ ମଣିଷ ସେହିମାନଙ୍କର ସ୍ୱାର୍ଥପାଇଁ ଚେଷ୍ଟା କରନ୍ତି, ତା'ହେଲେ ସମସ୍ତଙ୍କ ପାଇଁ ସବୁଠାରୁ ବେଶୀ ଉପକାର ସାଧିତ ହୋଇପାରିବ । ପୁଞ୍ଜିବାଦର ଏହି ବିଶ୍ୱାସ ଯନ୍ତ୍ର ସଭ୍ୟତାର ଅସଂଖ୍ୟ ଉନ୍ନତିମୂଳକ କାର୍ଯ୍ୟଦ୍ୱାରା ସମର୍ଥିତ ଓ ଉତ୍ସାହିତ ହେଲା । ଏପରିକି ଶ୍ରେଷ୍ଠ ଶ୍ରେଷ୍ଠ ପିଲମାନେ ଜାମ କରିବା ଓ ଜାତି-ଜାତି ମଧ୍ୟରେ ଯୁଦ୍ଧ ଓ ଶୋଷଣ, ପୁଞ୍ଜିବାଦ ଆରମ୍ଭ ସମୟରେ ଯେପରି ଥିଲା, ବର୍ତ୍ତମାନ ସେହିପରି ଥିଲେ ମଧ୍ୟ ପଶ୍ଚିମ ସଭ୍ୟତାରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନଙ୍କର ମତ ଯେ, ଏସବୁ କ୍ଷଣସ୍ଥାୟୀ ଓ ଯେତେବେଳେ ଶିଳ୍ପୀକରଣ ସମ୍ପୂର୍ଣ୍ଣ ହେବ ଓ କଳକାରଖାନା ଏବଂ କୃଷି ମଣିଷର ସବୁ ଅଭାବ ପୂରଣ କରିପାରିବ ଓ ବିଶ୍ୱସାରା ସବୁଆଡ଼େ ଏକ ସମ୍ପୂର୍ଣ୍ଣ ପ୍ରତିଯୋଗିତାର ମନୋଭାବ ଖେଳିଯିବ, ସେତେବେଳେ ପୃଥିବୀର ସବୁ ଲୋକଙ୍କ ପାଇଁ ଶାନ୍ତି ଓ ପ୍ରାଚୁର୍ଯ୍ୟ ସମ୍ଭବ ହୋଇପାରିବ ।

ଅର୍ଥନୀତିରେ ପଶ୍ଚିମ ମଣିଷର ଏହି ବିଶ୍ୱାସ ଆଦାମ୍ ସ୍ମିଥ୍ ଓ ତାଙ୍କର ପରବର୍ତ୍ତୀ ତତ୍ତ୍ୱବିତ୍‌ମାନଙ୍କ ଲେଖାରେ ଯୁକ୍ତିସମ୍ମତ ଭାଷାରେ ବିସ୍ତାରିତ ହୋଇଛି । ରାଜନୀତିରେ ସେହିପରି ବେନ୍‌ଥାମ ଓ ମିଲ୍‌ଙ୍କର ଆଲୋଚନାମାନଙ୍କରେ ଏକ ପ୍ରତିନିଧିମୂଳକ ଗଣତନ୍ତ୍ର ଓ ଏକ ଭବିଷ୍ୟତ ଆଶାର ପରିଚୟ ରହିଛି । ସମାଜବିଜ୍ଞାନର ବିଶ୍ୱାସ ଯେ, ମଣିଷ ଆରମ୍ଭର ଗୋଷ୍ଠୀ ଜୀବନରୁ ଆରମ୍ଭ କରି ଭଗବତ୍‌ମୂଳକ ଓ ଆଧିଭୌତିକ ସ୍ତର ମଧ୍ୟଦେଇ ବର୍ତ୍ତମାନର ଅସ୍ତିମୂଳକ, ବିଶେଷକରି କୋମ୍ତେ ଓ ସ୍ପେନ୍‌ସରଙ୍କର ବିଶ୍ୱାସ ସୂଚିତ କରୁଥିବା ସ୍ତରକୁ ଅଗ୍ରଗତି କରୁଛି । ଜର୍ମାନ୍ ତତ୍ତ୍ୱବିତ୍‌ମାନେ ଏହି ବିଶ୍ୱାସକୁ ସେମାନଙ୍କର ଦର୍ଶନ ଓ ଇତିହାସର ଦର୍ଶନମାନଙ୍କରେ ଯଥେଷ୍ଟ ଆଲୋଚନା କରିଛନ୍ତି । ହେଗେଲ ଓ ଫିକ୍‌ଟେ ସେମାନଙ୍କର ବିଭିନ୍ନ ଲେଖାରେ ଇତିହାସର ଆତ୍ମାର ନିରବଚ୍ଛିନ୍ନ ଉନ୍ନତିର ସୂଚନାଦେଇ

ପରେ ଯେପରି ପୃଥିବୀକୁ ସ୍ୱର୍ଗକୁ ଯେନ ଆସିଛନ୍ତି ଓ ଏହି ଉନ୍ନତି ମଣିଷରେ ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ପ୍ରତିଷ୍ଠିତ ଓ ଷ୍ଟେଟ୍ ବା ରାଜ୍ୟ ଏହି ଅନୁଷ୍ଠାନମାନଙ୍କର ମଧ୍ୟ-ମଣି ପରି ।

ଅର୍ଥନୀତି ସମାଜନୀତି ଓ ଇତିହାସ ସମ୍ପର୍କରେ ଏଗୁଡ଼ିକୁ ମତବାଦରେ ଅନେକ ଭୁଲଭ୍ରାନ୍ତି ରହିଛି ଓ ବର୍ତ୍ତମାନର ବୁଦ୍ଧିଜୀବୀମାନେ ଏ ସବୁକୁ ପୂର୍ଣ୍ଣଭାବରେ ଗ୍ରହଣ କରନ୍ତି ନାହିଁ । ଏହାସତ୍ତ୍ୱେ ଆଧୁନିକ ମନ ଏହି ମତ-ବାଦଦ୍ୱାରା ପ୍ରଭାବିତ । ଆମେରିକାପରି ଦେଶରେ ଯେଉଁଠି ପଶ୍ଚିମ ସଭ୍ୟତାର ଶକ୍ତି ଓ ଗୌରବ ଅଖଣ୍ଡଭାବରେ ପ୍ରତିଷ୍ଠିତ ଓ ଅଗ୍ରସର, ସେଠାରେ ସଭ୍ୟତାର ସିଧା ସିଧା ରୈଖିକ ଉନ୍ନତି ପ୍ରତି ଲୋକମାନେ ଆସ୍ଥାବାନ୍ । ସୋଭିଏତ୍ ରୁଷିଆର ମଧ୍ୟ ସମାନ ଅବସ୍ଥା । କମ୍ୟୁନିଷ୍ଟ ମତବାଦୀମାନଙ୍କର ଗୁରୁ କାର୍ଲ ମାର୍କସ୍‌ଙ୍କର ଅର୍ଥନୀତି ତତ୍ତ୍ୱ ଆଦାମ ସ୍ମିଥଙ୍କର ମତଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ସେହିପରି ଇତିହାସ ସମ୍ପର୍କରେ ସେ ହେଗେଲଙ୍କଠାରୁ ଭିନ୍ନ ମତ ପୋଷଣ କରନ୍ତି । ମାନବସଭ୍ୟତାର ନିରବଚ୍ଛିନ୍ନ ଉନ୍ନତି ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ । ଆଜି ହୁଏତ ତାଙ୍କର ମତବାଦ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀ ଇଉରୋପର ଅନ୍ୟାନ୍ୟ ପ୍ରସିଦ୍ଧ ତତ୍ତ୍ୱବିତ୍‌ମାନଙ୍କ ମତପରି ଖୁବ୍ ଗ୍ରହଣଯୋଗ୍ୟ ନ ହୋଇପାରେ; କିନ୍ତୁ ଆଧୁନିକ ମଣିଷର ମନ ଉପରେ ଅନ୍ୟମାନଙ୍କ ମତଠାରୁ କାର୍ଲମାର୍କସ୍‌ଙ୍କ ମତର ପ୍ରଭାବ ଅଧିକ ଗଭୀର ଓ ବ୍ୟାପକ । ସମାଜର ଯେଉଁ ଦିଗକୁ ସଙ୍ଗଠିତ କରିବାକୁ ସେ ଆଲୋଚନା କରିଥିଲେ, ସେ ଦିଗରେ ତାଙ୍କର ପ୍ରଭାବ ହୁଏତ ଏତେ ବ୍ୟାପକ ନୁହେଁ, କିନ୍ତୁ ପଶ୍ଚିମ ସଭ୍ୟତାରୁ ଯେଉଁମାନେ ଅତ୍ୟାଚାରିତ ଓ ବଞ୍ଚିତ, ସେମାନଙ୍କପାଇଁ କାର୍ଲ ମାର୍କସ୍ ଆଜି ମୁକ୍ତିର ପ୍ରତୀକ । ଯଦିଓ ପଶ୍ଚିମ ଇଉରୋପ ଓ ଆମେରିକାର ସଭ୍ୟତା ପାଇଁ ତାଙ୍କର ସ୍ୱର ଘୋର ହତାଶାପୂର୍ଣ୍ଣ, ଏହି ଅତ୍ୟାଚାରିତ ଲୋକଙ୍କପାଇଁ ସେ ଆଲୋକିତ ସୁବର୍ଣ୍ଣଯୁଗର ସଙ୍କେତ ଦେଇଛନ୍ତି ।

ଗତ ଶତାବ୍ଦୀରେ ପଶ୍ଚିମ ଇଉରୋପର ଅଧିକାଂଶ ଲୋକ ସଭ୍ୟତାର ସାଧାରଣ ଉନ୍ନତିରେ ବିଶ୍ୱାସ କରୁଥିଲେ । ବର୍ତ୍ତମାନ ମଧ୍ୟ ଅନେକ

ଲୋକଙ୍କର ସେଇ ବିଶ୍ୱାସ ରହିଛି । ସ୍ପେଙ୍ଗଲର୍‌ଙ୍କ ପରେ ଟଏନ୍‌ବିଙ୍କର ସେଇ ବିଶ୍ୱାସ ଲକ୍ଷ୍ୟ କରିଯାଇ ପାରେ । ଟଏନ୍‌ବିଙ୍କ ମତରେ ଇତିହାସର ଗୌରବମୟ ଯୁଗ ବିଖ୍ୟାତ ରାଜମାନଙ୍କ ବା ସମ୍ରାଟ୍ ବା ସେନାପତିଙ୍କ ଉପରେ ନିର୍ଭର କରେ ନା । ସେହିପରି ବିରାଟ ସାମ୍ରାଜ୍ୟର ସୃଷ୍ଟିରେ ବା ଉନ୍ନତ କଳା ସ୍ଥାପତ୍ୟରେ ଇତିହାସର ଗୌରବ ନାହିଁ । ତାଙ୍କ ମତରେ ଯେତେବେଳେ ସଭ୍ୟତାର ଦୁଃସମୟ, ଘୋର ହତାଶା ଓ ବିଷାଦ ସମଗ୍ର ଦେଶରେ ବ୍ୟାପି ଯାଇଥାଏ, ସେଇ ସମୟକୁ ଇତିହାସର ଗୌରବମୟ ସମୟ ବୋଲି କୁହାଯାଇପାରେ । କାରଣ ଏହି ସମୟରେ ମହାନ୍ ଧର୍ମସବୁର ଉଦ୍ଭବ ହୁଏ ଓ ଏହା ଫଳରେ ମଣିଷ ମନର ଅନେକ ଅଭାବ ପୂରଣ ହୁଏ । ତେଣୁ ଯେଉଁ ସମୟରେ ଇସ୍‌ଲାମଧର୍ମ, ଖ୍ରୀଷ୍ଟଧର୍ମ ଓ ବୌଦ୍ଧ ଧର୍ମର ଉଦ୍ଭବ ହୋଇ ପ୍ରଚାର ଓ ପ୍ରତିଷ୍ଠା ହେଲା, ସେ ସମୟକୁ ମଣିଷ ସଭ୍ୟତାର ମହାନ୍‌ଯୁଗ ବୋଲି କୁହାଯାଇପାରେ । ଏଇ ସମୟରେ ମଣିଷ ପୃଥିବୀ, ପ୍ରକୃତି, ବିଶ୍ୱ ଓ ଅନ୍ୟମାନଙ୍କ ସହିତ ନିଜର ସମ୍ପର୍କ ସମ୍ବନ୍ଧରେ ବେଶି ସଚେତ ।

ଆଗରୁ ଆଲୋଚିତ ହୋଇଥିବା ଇତିହାସର ଚକ୍ରାକାର ମତବାଦ ସହିତ ଏପରି ମତବାଦର ସାମଞ୍ଜସ୍ୟ ରହିଛି । ଏହାର କାରଣ, ବର୍ତ୍ତମାନ କଳା, ବିଜ୍ଞାନ ଓ ଯନ୍ତ୍ର ଆଦିରେ ଯେଉଁସବୁ ଉନ୍ନତି ସାଧିତ ହୋଇଛି, ସେସବୁ ଟଏନ୍‌ବିଙ୍କ ମତରେ ସଭ୍ୟତାର ଦୀର୍ଘ ଅବକ୍ଷୟ ସହିତ ଜଡ଼ିତ । ଏକ ସାଧାରଣ ଉଦ୍ଦେଶ୍ୟହୀନତାରେ ଏଇ ଅବକ୍ଷୟ ସୂଚିତ । ଏ ଯେପରି ଏକ ଘଟଣାବହୁଳ ଦିବସ ପରେ ଏକ ଅନ୍ଧକାର ରାତି ଏବଂ ଉଷାର ପ୍ରକାଶ ହେବାକୁ ବହୁତ ବିଳମ୍ବ ଅଛି । କିନ୍ତୁ ଟଏନ୍‌ବି ତାଙ୍କର ଭବିଷ୍ୟତକୁ ବର୍ତ୍ତମାନର ସଭ୍ୟତାର ଓ ବିଶେଷ କରି ଖ୍ରୀଷ୍ଟଧର୍ମର ପ୍ରଚାର ସହିତ ଜଡ଼ିତ କରିଛନ୍ତି ଓ ତାଙ୍କ ମତରେ ବର୍ତ୍ତମାନର ପଶ୍ଚିମ ସଭ୍ୟତା ଭବିଷ୍ୟତର ବିରାଟ ବିଶ୍ୱସଭ୍ୟତାରେ ପରିଣତ ହେବ ।

ଇତିହାସର ରୈଖିକ ମତବାଦ ସହିତ ଏପରି ମତବାଦର ସାମଞ୍ଜସ୍ୟ ରହିଛି । ଟଏନ୍‌ବିଙ୍କ ମତରେ ଖ୍ରୀଷ୍ଟଧର୍ମ ବର୍ତ୍ତମାନ ମଣିଷର ସବୁପ୍ରକାର ଅଭାବ ପୂର୍ତ୍ତି କରିବାକୁ ସମର୍ଥ ଓ ଇସ୍‌ଲାମ ଧର୍ମ ସହିତ ମିଶି ଏହା ସମଗ୍ର ପୃଥିବୀରେ ପ୍ରସାରିତ ହେବା ସଙ୍ଗେ ସଙ୍ଗେ

ବିଶ୍ୱଶାନ୍ତି ଆଣିପାରିବ । କିନ୍ତୁ ବର୍ତ୍ତମାନ ପୃଥିବୀର ବହୁ ଅନୁଷ୍ଠାନ ଓ ଅର୍ଥନୀତି ସମ୍ପର୍କରେ, ବିଶେଷ କରି ପୃଥିବୀର ଗୋଟିଏ ଅଞ୍ଚଳ ଅନ୍ୟ ଅଞ୍ଚଳଠାରୁ ଯେ ଅଧିକ ଶକ୍ତିଶାଳୀ, ଏ ବିଷୟରେ ଟଏନ୍‌ବିଙ୍କର କୌଣସି ନିର୍ଦ୍ଦିଷ୍ଟ ମତ ନାହିଁ । ମୋର ଆଶଙ୍କା, ଟଏନ୍‌ବି ଖ୍ରୀଷ୍ଟଧର୍ମ ଉପରେ ଖୁବ୍ ଅଧିକ ଆସ୍ଥାବାନ୍ ଓ ତାଙ୍କ ମତରେ ବର୍ତ୍ତମାନ ପୁଞ୍ଜିବାଦ, ଯୁଦ୍ଧ ବିଗ୍ରହ ଓ ଦାରିଦ୍ର୍ୟରୁ ଏକମାତ୍ର ବୋଧହୁଏ ଖ୍ରୀଷ୍ଟଧର୍ମ ମଣିଷକୁ ଉଦ୍ଧାର କରି ଶାନ୍ତି ଆଣିପାରିବ ।

ଖ୍ରୀଷ୍ଟଧର୍ମର ଗୁରୁତ୍ୱ ମୁଁ ଅସ୍ୱୀକାର କରୁନାହିଁ । ବର୍ତ୍ତମାନର ଯନ୍ତ୍ର, ଶିଳ୍ପ, ଗଣତନ୍ତ୍ର ଓ ସଂଘର୍ଷ ସତ୍ତ୍ୱେ ଖ୍ରୀଷ୍ଟଧର୍ମ ସାହାଯ୍ୟରେ ମଣିଷ ନିଜର ଭାଗ୍ୟ ଗଠନ କରିପାରିବ, ଏହା ଅନେକ ଲୋକ ବିଶ୍ୱାସ କରନ୍ତି । କିନ୍ତୁ ଏପରି ମତର ଯଥାର୍ଥତା ସନ୍ଦେହଜନକ ଏବଂ ମୋ ମତରେ ଏ କେବଳ ଊନବିଂଶ ଶତାବ୍ଦୀର ରୈଖିକ ମତବାଦ ଓ ତାର ପରବର୍ତ୍ତୀ ଚିନ୍ତାକାର ମତବାଦର ଯାହାସବୁ ଭଲ ସେସବୁ ସଙ୍ଗଠନ କରିବାର ଚେଷ୍ଟା ମାତ୍ର ।





# ଇତିହାସର ବସ୍ତୁତାନ୍ତ୍ରିକ ବିଶ୍ଳେଷଣ

ଇତିହାସ ସଂପର୍କରେ କାର୍ଲ ମାର୍କସଙ୍କ ମତ ହେଉଛି ଯେ, ମଣିଷ ବିଭିନ୍ନ ମାର୍ଗଦେଇ ଗତିକରି ଆସିଛି । ହୁଏତ ଏଇ ଅଗ୍ରଗତି ମଣିଷର ଇଚ୍ଛାନୁସାରରେ ସାଧିତ ହୋଇନାହିଁ ବା ଏହା ନିରବଚ୍ଛିନ୍ନ ନୁହେଁ ; କିନ୍ତୁ ଆଦିମ ଜୀବନ ଠାରୁ ଆଧୁନିକ ଅବସ୍ଥା ପର୍ଯ୍ୟନ୍ତ ମଣିଷର ଅଗ୍ରଗତିରେ ଯେ କିଛି ପରିମାଣରେ ଇତିହାସର ଶକ୍ତି ରହିଛି, ଏହା ନିଶ୍ଚିତ । ଏହା କିପରି ସଙ୍ଘଟିତ ହେଲା, ଏ ସଂପର୍କରେ ମାର୍କସଙ୍କର ସୁଚିନ୍ତିତ ସ୍ପଷ୍ଟ ମତ ରହିଛି । ତାଙ୍କ ମତରେ ମଣିଷ ମୁଖ୍ୟତଃ ଚାରୋଟି ବିଭିନ୍ନ ଅବସ୍ଥା ଅତିକ୍ରମ କରିଛି । ପ୍ରଥମ ଅବସ୍ଥା ହେଉଛି ଏକ ଆଦିମ ସାମ୍ୟବାଦ ଅବସ୍ଥା । ଦ୍ୱିତୀୟ କ୍ରୀତଦାସ ଅବସ୍ଥା । ଏହି ସମୟରେ ପ୍ରବଳ ପରାକ୍ରାନ୍ତ ଅତ୍ୟାଚାରୀ ଶାସକମାନେ ଅନ୍ୟମାନଙ୍କୁ କ୍ରୀତଦାସ ପରି ବ୍ୟବହାର କରୁଥିଲେ, ତୃତୀୟରେ ଫିଉଡାଲ ବା ରାଜା ଓ ଜମିଦାରଙ୍କ ଯୁଗ ଏବଂ ଚତୁର୍ଥରେ ବର୍ତ୍ତମାନର ପୁଞ୍ଜିବାଦୀ ସମାଜର ଅବସ୍ଥା ।

ପ୍ରଥମ ଅବସ୍ଥା ଇତିହାସର ପୂର୍ବବର୍ତ୍ତୀ ଅବସ୍ଥା । ତେଣୁ ଇତିହାସ ଆଲୋଚନାରେ ଏଇ ଅବସ୍ଥାକୁ ବାଦ୍ ଦିଆଯାଇ ପାରେ ; କିନ୍ତୁ ଅନ୍ୟାନ୍ୟ ଯୁଗରେ ଇତିହାସର ଗତି ସ୍ପଷ୍ଟ ଲକ୍ଷ୍ୟ କରାଯାଇ ପାରେ ଓ ବିଭିନ୍ନ ସମୟରେ ଉତ୍ପାଦନର ବିଭିନ୍ନ ଧାରାରୁ ଇତିହାସର କିଛି ନିର୍ଦ୍ଦିଷ୍ଟ ନିୟମ ସଂଗ୍ରହ କରାଯାଇ ପାରେ । ଏଇ ସମୟରେ ଉତ୍ପାଦନର ଅନ୍ତର୍ନିହିତ ଶକ୍ତି ଓ ଉତ୍ପାଦନ ସଂପର୍କୀୟ ବସ୍ତୁମାନଙ୍କ ମଧ୍ୟରେ ସର୍ବଦା ସଙ୍ଘର୍ଷ ଲାଗିରହିଛି । ଗୋଟିଏ ଦିଗରେ ଉତ୍ପାଦନକୁ ବ୍ୟବହାର କରିବାକୁ ବିଭିନ୍ନ ମୌଳିକ

ପନ୍ଥା ଓ ଅନ୍ୟ ଦିଗରେ ଉତ୍ପାଦନ ସମ୍ବନ୍ଧିତ ସଂପର୍କିତ ସଂପତ୍ତିର ଦାବୀ । ଇତିହାସ ସଂପର୍କରେ ମାର୍କସ୍‌ଙ୍କ ଆଲୋଚନାର ଏହା ହିଁ ଦୁଇଟି ବିଶିଷ୍ଟ ଦିଗ । ଏଇ ଦୁଇ ଦିଗର ସଙ୍ଘର୍ଷରୁ ଶ୍ରେଣୀ-ସଙ୍ଘର୍ଷର ସୃଷ୍ଟି ଓ ମାର୍କସ୍‌ଙ୍କ ମତରେ ମଣିଷର ଇତିହାସ କେବଳ ହିଁ ଶ୍ରେଣୀ-ସଙ୍ଘର୍ଷର ଇତିହାସ ।

ମଣିଷର ଇତିହାସରେ ଏଇ ସଙ୍ଘର୍ଷ ବହୁ ବିଭିନ୍ନ ରୂପ ନେଇଛି । ସାମନ୍ତବାଦୀ ସମାଜର ଶ୍ରେଣୀ-ସଙ୍ଘର୍ଷ ପୁଞ୍ଜିବାଦୀ ସମାଜର ଶ୍ରେଣୀ-ସଙ୍ଘର୍ଷଠାରୁ ଭିନ୍ନ ; କିନ୍ତୁ ବିଭିନ୍ନ ସମୟରେ ଯେ ବିଭିନ୍ନ ଶ୍ରେଣୀ ରହିଛି ଓ ଏଇ ଶ୍ରେଣୀମାନଙ୍କ ମଧ୍ୟରେ ଏକ ନିରବଚ୍ଛିନ୍ନ ସଙ୍ଘର୍ଷ ଲାଗିରହିଛି, ଏହା ସତ୍ୟ । ଏହି ସବୁ ସଙ୍ଘର୍ଷର ଉଦ୍ଦେଶ୍ୟ ହେଲା, ଉତ୍ପାଦନର ମୂଳଶକ୍ତି ସବୁକୁ ମୁକ୍ତିଦେବା । ସାମନ୍ତବାଦୀ ଅର୍ଥନୀତି ଅମଳରେ ଜମି ଉପରେ ମାଲିକାନା ସ୍ୱତ୍ୱ ସ୍ଥିର ହେଲା ଓ ଉତ୍ପାଦନକୁ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଟପିଯିବାକୁ ଦିଆଗଲା ନାହିଁ, ଏବଂ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀ ସମାଜରେ ମୁଖ୍ୟ ହେଲା ।

ସେହିପରି ପୁଞ୍ଜିବାଦୀ ଅର୍ଥନୀତି ଅମଳରେ ଜମି ସଂକ୍ରାନ୍ତୀୟ ବିଭିନ୍ନ ଆଇନଫଳରେ ଶିଳ୍ପବିପ୍ଳବ ବା ଶିଳ୍ପ ଓ କୃଷିରେ ବିଜ୍ଞାନର ପ୍ରୟୋଗ ସମ୍ପୂର୍ଣ୍ଣ ଭାବରେ ହେଲାନାହିଁ । ପୁଞ୍ଜିବାଦୀ ଅର୍ଥନୀତିରେ ସମ୍ପତ୍ତି ସଂକ୍ରାନ୍ତୀୟ ବିଭିନ୍ନ ଘଟଣାବଳୀ ଯୋଗୁଁ ଶିଳ୍ପ ପ୍ରଣାଳୀର ପରିପୂର୍ଣ୍ଣ ବିନିଯୋଗ ହୋଇପାରିଲା ନାହିଁ ଏବଂ ଶିଳ୍ପ ଓ କୃଷିରେ ବିଜ୍ଞାନର ବ୍ୟବହାର ହୋଇପାରିଲା ନାହିଁ । ବହୁଦିନ ପର୍ଯ୍ୟନ୍ତ ଉତ୍ପାଦନର ଶକ୍ତି ଆବଦ୍ଧ ହୋଇ ରହିଲା ଓ ଶ୍ରମିକଗୋଷ୍ଠୀ ସଂଗଠିତ ଓ ଶକ୍ତିଶାଳୀ ହୋଇ ସମ୍ପତ୍ତି ସଂକ୍ରାନ୍ତୀୟ ନିୟମ କାନୁନ୍ ସବୁ ଅମାନ୍ୟ କରିବା ପରେ ଏଇ ଆବଦ୍ଧ ଶକ୍ତି ମୁକ୍ତ ହେଲା । ମଣିଷର ମନ ବା ତାହାର ଇଚ୍ଛା ଅନିଚ୍ଛା ସହିତ ଏହାର କୌଣସି ସମ୍ପର୍କ ନାହିଁ । ସମାଜରେ ଏହା ସ୍ୱତଃ ସଂଘଠିତ ହୋଇଛି ଓ ମଣିଷ ଏହାର ପରିବର୍ତ୍ତନ ପାଇଁ ବାହାର ଶକ୍ତି ଦ୍ୱାରା ବାଧ୍ୟ ହୋଇଛି । ଇତିହାସର ସବୁ କିଛି ଉନ୍ନତ ଉତ୍ପାଦନପ୍ରଣାଳୀ ମଧ୍ୟରେ ସଂଘଠିତ ହୋଇଛି । ବିଶେଷ କରି ଏହି ଉନ୍ନତର ପୃଷ୍ଠଭୂମିରେ ଉତ୍ପାଦନର ଶକ୍ତି ଓ ଉତ୍ପାଦନ ସମ୍ବନ୍ଧୀୟ ବିଭିନ୍ନ ଘଟଣାଗୁଡ଼ିକ ସଂଘଠିତ ।

ତେବେ ଏହି ତିନି ଗୃହବଣ୍ଟି ଯୁଗ ମଧ୍ୟରେ ପୃଥିବୀର ସବୁ ମଣିଷଙ୍କର ଇତିହାସକୁ ସଙ୍କୁଚିତ କରି ଦେଖିହେବ କି ନାହିଁ, ଏ ବିଷୟରେ ଅନେକ ସନ୍ଦେହର ଅବକାଶ ରହିଛି । ଭାରତରେ ଏକ ସମୟରେ ଦାସ ଯୁଗର କୁଳୀନତା ଥିଲା । ଏହା ପ୍ରମାଣ କରିବାକୁ ହୁଏତ ଇତିହାସର ଘଟଣା ସବୁକୁ ଏପାଖ ସେପାଖ କରିବାକୁ ପଡ଼ିପାରେ । ସେହିପରି ପୃଥିବୀର ଅଳ୍ପ ବହୁତ ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ ଏକ ସାମନ୍ତବାଦୀ ସଭ୍ୟତା ବ୍ୟାପ୍ତ ହୋଇ ଯାଇଥିଲା । ଏହା ପ୍ରମାଣ କରିବା ପାଇଁ ଇତିହାସର ଘଟଣା ସବୁକୁ ଆଗପଛ କରିବାକୁ ହେବ ।

ଇତିହାସର ଏହିପରି ବିଭିନ୍ନ ସଙ୍କୋଚନ ଓ ସଂପ୍ରସାରଣ ବ୍ୟତୀତ କାର୍ଲମାର୍କସଙ୍କର ମତକୁ ଅନ୍ୟ ଏକ ଦିଗରୁ ବିଚାର କରାଯାଇ ପାରେ । ସେ ଦେଉଛି, ଇତିହାସ ସମ୍ପର୍କରେ ମାର୍କସ୍‌ଙ୍କର ମତ କେତେଦୂର ଫଳପ୍ରଦ ତାହା ସ୍ଥିର କରିବା । ଶ୍ରେଣୀ-ସଂଘର୍ଷ ଫଳରେ ପୁଞ୍ଜିବାଦ ଅର୍ଥନୀତି ନିଜକୁ ନିଜେ ବିନାଶ କରେ । ଏହାହିଁ ମାର୍କସ୍‌ଙ୍କର ମତ । ପୁଞ୍ଜିବାଦ ବ୍ୟାପକ ହୋଇ ବିସ୍ତାରିତ ହେବା ସଙ୍ଗେ ସଙ୍ଗେ ଯୋଡ଼ିଏ ଘଟଣା ଘଟେ । ପ୍ରଥମତଃ ପୁଞ୍ଜି ଏକାଠି ହୋଇ କ୍ରମଶଃ ବୃଦ୍ଧି ଲାଭକଲେ, ଅନ୍ୟ ପକ୍ଷରେ ଶ୍ରମିକ ଗୋଷ୍ଠୀରେ ଅଧିକରୁ ଅଧିକ ସମାନତା ଆସେ । ବଡ଼ ବଡ଼ ପୁଞ୍ଜିପତିମାନେ କ୍ରମଶଃ ବୃହତ୍ ବୃହତ୍ ଆର୍ଥନୀତିକ ଅଞ୍ଚଳ ଉପରେ ନିଜର ଆଧିପତ୍ୟ ବିସ୍ତାର କରନ୍ତି । ଏହା ସହିତ ବଡ଼ ବଡ଼ କଳକାରଖାନାମାନଙ୍କରେ କାମ କରୁଥିବା ଶ୍ରମିକମାନେ ଏକାଠି ହେବାର ସୁଯୋଗ ପାଆନ୍ତି ଓ ନିଜକୁ ସଂଗଠିତ କରି କ୍ରମଶଃ ଶକ୍ତିଶାଳୀ ହୁଅନ୍ତି । ଏହା ସହିତ ନାନାଭାବରେ ଶ୍ରମିକ-ମାନଙ୍କୁ ଶୋଷଣ କରିବା ଆରମ୍ଭ ହୁଏ ଓ ଶୋଷିତ ଶ୍ରମିକ କ୍ରମଶଃ ଦୁର୍ବଳରୁ ଦୁର୍ବଳତର ହୁଏ । ପୁଞ୍ଜିର ଏକତ୍ରୀକରଣ, ଶ୍ରମିକ ଗୋଷ୍ଠୀର ସାମ୍ୟବାଦୀ ସଂଗଠନ ଓ ଶ୍ରମିକ ଶୋଷଣ—ଏସବୁ ଏକାଠି ରହି ରହି ଚରମକ୍ଷଣରେ ଶ୍ରମିକ ସଂଗଠନ ଯଥେଷ୍ଟ ଶକ୍ତିଶାଳୀ ହୁଏ ଓ ଦେଶ ଅର୍ଥନୀତିରେ ପୁଞ୍ଜିବାଦୀର ଅର୍ଥନୀତିକୁ ସମ୍ପୂର୍ଣ୍ଣ କ୍ଷୟକରେ । ଯାହାଫଳରେ ପୁଞ୍ଜିବାଦୀ-ଶ୍ରମିକ-ସମ୍ପର୍କ ନଷ୍ଟହୁଏ, ସାମ୍ୟବାଦୀ ପ୍ରତିଷ୍ଠାନ ସଂଗଠିତ ହୁଏ ଓ ବିଜ୍ଞାନ ବଦଳିଯାଇ ଶିଳ୍ପ ବା କୃଷିରେ ପରିଣତ ହୁଏ । ପ୍ରଶ୍ନ ହେଉଛି ବାସ୍ତବରେ ଇତିହାସ ଠିକ୍ ମାର୍କସ୍ କହିବା ଭାବରେ ସଂଗଠିତ ହୋଇଛି କି ?

ପୁଞ୍ଜିର ଏକତ୍ରୀକରଣ ହୁଏତ ସମ୍ଭବ ହୋଇଛି ; କିନ୍ତୁ ଶ୍ରମିକ ଗୋଷ୍ଠୀର ସାମ୍ୟବାଦୀ ସଂଗଠନ ବା ପ୍ରୋଲେଟାରିଆଟ୍‌ମାନଙ୍କ ମଧ୍ୟରେ ଦରିଦ୍ରତାର ବୃଦ୍ଧି ଠିକ୍ ଠିକ୍ ସମ୍ଭବ ହୋଇଛି କି ? ପୁଣି ଶ୍ରେଣୀ-ସଂଘର୍ଷର ସଂଗଠନ ଫଳରେ ପୁଞ୍ଜିବାଦୀ ଜଗତର ମୁଖ୍ୟ ବ୍ୟକ୍ତିମାନେ ସାମ୍ୟବାଦୀ ଜଗତର ଅଗ୍ରଣୀ ଓ ପଥପ୍ରଦର୍ଶକ ହେବେ, ମାର୍କସ୍‌ଙ୍କର ସଭ୍ୟତା ସମ୍ପର୍କରେ ଏ ଭବିଷ୍ୟତ ବାଣୀ କେତେଦୂର ସମ୍ଭବ ହୋଇଛି ? ମାର୍କସ୍ ଓ ଏଞ୍ଜେଲସ୍ ସେମାନଙ୍କ ଲେଖାରେ ହୁଏତ ରୁଷ ବିପ୍ଳବ କଥା ଥରେ ଅଧେ କହିଛନ୍ତି; କିନ୍ତୁ ଜର୍ମାନୀ ଓ ଇଂଲଣ୍ଡରେ ଯେ ବିପ୍ଳବ ହେବ, ଏ କଥା ବାରମ୍ବାର କହିଛନ୍ତି । କାହିଁ, ତା ହେଲା କି ? ପୁଣି କମ୍ୟୁନିଷ୍ଟ ବିପ୍ଳବର ଯେଉଁ ସର୍ତ୍ତ ମାର୍କସ୍ ତିଆରି କରିଥିଲେ, ସେଥିରେ ଚୀନ୍ କେଉଁଠି ହେଲେ ନାହିଁ । ତେଣୁ ମାର୍କସ୍‌ଙ୍କର ବିକ୍ଷିପ୍ତ ମତାମତ ବା ସଭ୍ୟତା ସମ୍ପର୍କରେ ତାଙ୍କର ନିୟମାବଳୀର ତାତ୍ତ୍ୱିକ ଆଲୋଚନା ବିଶେଷ ଫଳପ୍ରଦ ନୁହେଁ ।

କଥା ହେଉଛି, ପୁଞ୍ଜିବାଦରୁ ସାମ୍ୟବାଦ ଆଡ଼କୁ ମଣିଷ ସଭ୍ୟତାର ଇତିହାସର ଅଭିବୃଦ୍ଧିର ନିୟମ କଅଣ ? ବିକ୍ଷିପ୍ତ ଭବିଷ୍ୟତ୍ ବାଣୀର ଭୁଲ ଠିକ୍ ପ୍ରଭୃତି ବିଚାର ନ କରି ଏହି ନିୟମର ଆଲୋଚନା କରାଯିବା ଉଚିତ । ପୁଞ୍ଜିବାଦୀ ଅର୍ଥନୀତିର ଉନ୍ନତ ଓ ପରିଣତ ଅବସ୍ଥାରେ ଶ୍ରେଣୀ-ସଂଘର୍ଷ ଜଟିଳ ଓ ଗୁରୁତ୍ୱପୂର୍ଣ୍ଣ ହୋଇଉଠିବ, ଏହାହିଁ ନିୟମ । ଅତି ଉନ୍ନତ ପୁଞ୍ଜିବାଦୀ ଦେଶ-ମାନଙ୍କର ପ୍ରୋଲେଟାରିଆଟ୍ ଏପରି ସଙ୍ଗଠିତ ହେବେ ଯେ, ପରିଶେଷରେ ସେହିମାନଙ୍କଦ୍ୱାରା ହିଁ ପୁଞ୍ଜିବାଦର ଅବସାନ ହୋଇ କମ୍ୟୁନିଷ୍ଟ ବା ସାମ୍ୟବାଦୀ ସଭ୍ୟତାର ଆରମ୍ଭ ହେବ ।

ନବ୍ୟ ମାର୍କସ୍ ପନ୍ଥୀମାନେ ହୁଏତ କହିପାରନ୍ତି ଯେ, ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରମିକମାନଙ୍କର ସାମ୍ୟ ସମ୍ଭବ ହୋଇପାରିଛି, ଅଥଚ ଏସିଆ ଓ ଆଫ୍ରିକାର ଅନୁନ୍ନତ ଦେଶମାନଙ୍କରେ ଶ୍ରମିକମାନେ ଦରିଦ୍ରରୁ ଦରିଦ୍ରତର ହୋଇଛନ୍ତି । ମାର୍କସ୍ ନିଜେ ବି ଏହିପରି ଏକ ମିଳିତ ଅବସ୍ଥାର ସମ୍ଭାବନା ସ୍ୱୀକାର କରିଥିଲେ । ସେ ଭାବିଥିଲେ, ଏହିପରି ଏକ ମିଶ୍ରଣ ଫଳରେ ପୁଞ୍ଜିବାଦୀ ସଂସ୍ଥାରେ ବିଭ୍ରାଟ ଆସିଯିବ । ନବ୍ୟ ମାର୍କସ୍-ପନ୍ଥୀମାନେ ହୁଏ ତ କହିପାରନ୍ତି ଯେ, ଏହି ବିଭ୍ରାଟକୁ କେତେକ ପରିମାଣରେ

ରେକ ବଆଯାଇ ପାରନ୍ତି । କାରଣ ଯଦିଚ ଭାରତ, ଚିନ୍, ମାଲୟ, ବ୍ରହ୍ମଦେଶ ଓ ଆଫ୍ରିକାରେ ଅଗଣିତ ଜନତା ଅତି ଦରିଦ୍ର ଅବସ୍ଥାରେ ରହିଛନ୍ତି, ଇଂଲଣ୍ଡ, ଜର୍ମାନୀ ଓ ଆମେରିକା ପ୍ରଭୃତି ଉନ୍ନତ ଦେଶମାନଙ୍କରେ ଶ୍ରମିକଗୋଷ୍ଠୀ ବଡ଼ ବଡ଼ କାରଖାନାମାନଙ୍କରେ କାମ କରିବା ସଙ୍ଗେ ସଙ୍ଗେ ଭଲ ପାରିଶ୍ରମିକ ପାଇ ନିଜ ଭିତରେ ସାମ୍ୟ ଆଣିବାକୁ ସକ୍ଷମ ହୋଇଛନ୍ତି ।

ସେ ଯାହାହେଉ, ବିଭିନ୍ନ ଦେଶର ଶ୍ରମିକଗୋଷ୍ଠୀର ଅବସ୍ଥାରେ ଏହି ତାରତମ୍ୟ ହେତୁ ମାର୍କସ୍‌ଙ୍କର ନିୟମ ଯେପରି ଭାବରେ ଘୋଷିତ ହୋଇଥିଲା, ଅନ୍ତତଃ ସେପରି ଭାବରେ କାର୍ଯ୍ୟକାରୀ ହୋଇନାହିଁ । ତେଣୁ ଏପରି ନିୟମର କୌଣସି ଅର୍ଥ ରହିଲା ନାହିଁ । ଯଦି କୁହାଯାଏ ଯେ, ବର୍ତ୍ତମାନର ଓ ଅତୀତର ଉପନିବେଶମାନଙ୍କରେ ଜନତା ଦରିଦ୍ର ହେବା ସଙ୍ଗେ ସଙ୍ଗେ ସେହି ଅଞ୍ଚଳମାନଙ୍କରେ ସଙ୍ଗଠିତ ହେବାର ଯଥେଷ୍ଟ ସମ୍ଭାବନା ରହିଛି, ତାହେଲେ ନିୟମର ଗୁରୁତ୍ୱ ଆଉ କେଉଁଠି ରହିଲା ? ସମ୍ପତ୍ତିର ସମ୍ପର୍କ ସବୁ ପରିବର୍ତ୍ତିତ ହେବା ସଙ୍ଗେ ସଙ୍ଗେ ଉତ୍ପାଦନର ଶକ୍ତି ସବୁ ସ୍ୱତଃ ସଂଗୃହିତ ହୋଇ ପୃଥିବୀରେ ପ୍ରାଚୁର୍ଯ୍ୟ ଆଣିଦେବ, ଏପରି ଚିନ୍ତା କରିବା ଆଉ ସମ୍ଭବ ନୁହେଁ । ଅର୍ଥାତ୍ ବିପ୍ଳବ କେବଳ ସେହି ସେହି ଅଞ୍ଚଳରେ ସମ୍ଭବ ହେବ, ଯେଉଁଠି ଉତ୍ପାଦନର ମୂଳଶକ୍ତି ସବୁ ସାମନ୍ତବାଦୀ ଅବସ୍ଥାକୁ ଅତିକ୍ରମ କରି ଯାଇନାହିଁ ବା ତାଠାରୁ ନିମ୍ନତର ସ୍ତରରେ ଅଛି । ପରିଣାମରେ ନୂଆ ସଭ୍ୟତା ଯଦି ଆରମ୍ଭ ହୁଏ, ସେ କେବଳ ବେକ ଗୁରିପାଖରେ ଗୋଟାଏ ଫାଶ ଲଗେଇ ଆରମ୍ଭ ହେବାପରି ହେବ ।

କିନ୍ତୁ ଇତିହାସର ବସ୍ତୁତାନ୍ତ୍ରିକ ବିଶ୍ଳେଷଣର ମୂଳକଥା ହେଲା ଯେ, ନୂଆ ସଭ୍ୟତା କେବଳ ଉନ୍ନତ ପୁଞ୍ଜିବାଦୀ ଦେଶରେ ଆରମ୍ଭ ହୋଇ ପାରିବ । ତା'ହେଲେ ସମ୍ପତ୍ତିର ସାମ୍ୟବାଦମୂଳକ ସଙ୍ଗଠନ ଫଳରେ ପୁଞ୍ଜିବାଦୀ ସଂସ୍କାର କଳକାରଖାନା, ଯନ୍ତ୍ରପାତି ଓ ବିଜ୍ଞାନଭିତ୍ତିକ କୃଷିର ଉପଯୁକ୍ତ ବିନିଯୋଗ ହୋଇ ପୃଥିବୀରେ ପ୍ରାଚୁର୍ଯ୍ୟ ଓ ସମୃଦ୍ଧି ସମ୍ଭବ ହେବ । ଏପରି ବିଶ୍ଳେଷଣରୁ ଧାରଣା ହେବ, ସତେ ଯେପରି ସୁବର୍ଣ୍ଣଯୁଗ ଆଉ ବେଶି ଦୂର ନାହିଁ । ଯଦି ଉତ୍ପାଦନର ସମ୍ପର୍କ ସବୁ ମଣିଷ ସଭ୍ୟତାର ଉନ୍ନତିର ଏକମାତ୍ର ପ୍ରତିବନ୍ଧକ ହୋଇଥାଏ, ତେବେ ଶ୍ରେଣୀ-ସଂଘର୍ଷ ଫଳରେ ସେହି

ପ୍ରତିବନ୍ଧକ ସବୁ ଦୂରୀଭୂତ ହେବ ଓ ଉତ୍ପାଦନର ସାମ୍ୟବାଦୀମୂଳକ ସଙ୍ଗଠନକୁ ଭିତ୍ତିକରି ସମ୍ମିଳିତ ଭାବରେ ଯେଉଁ ସମାଜ ସଙ୍ଗଠିତ ହୋଇ ପାରିବ, ତାଦ୍ୱାରା ଯନ୍ତ୍ରପାତି ଓ କୃଷିର ସର୍ବୋତ୍ତମ ବିନିଯୋଗ ହେବା ସମ୍ଭବ ହେବ ; କିନ୍ତୁ ଭବିଷ୍ୟତ ସୁବର୍ଣ୍ଣଯୁଗର ଏହି ସୁନେଲି ଚିତ୍ରରେ କିଛି କାଳିମା ଅଛି । କାରଣ, ବର୍ତ୍ତମାନର ସଭ୍ୟତାକୁ ନେତୃତ୍ୱ ଦେଇ ପରିଚାଳିତ କରୁଥିବା ଦେଶମାନେହିଁ ପରବର୍ତ୍ତୀ ସଭ୍ୟତାର ପ୍ରତିବାଧକ ହେବେ, ଏହାହିଁ ବିଶ୍ୱାସ ।

ଏହି ବିଶ୍ୱାସକୁ ହୃଦୟଙ୍ଗମ କଲେ ମାର୍କସ୍‌ଙ୍କର ଇତିହାସର ବସ୍ତୁତାନ୍ତ୍ରିକ ବିଶ୍ଳେଷଣର ମୂଳ କେଉଁଠି, ତା ବୁଝିହେବ । ପ୍ରତ୍ୟେକ ବ୍ୟକ୍ତି ନିଜର ଯୁଗ ବା ଅଞ୍ଚଳର ଗୌରବ ପ୍ରତିଷ୍ଠା କରିବାକୁ ଚାହେଁ ଓ ବର୍ତ୍ତମାନ କାଳରେ ପଶ୍ଚିମ ୟୁରୋପ ନିଜସ୍ୱ ଫଳପ୍ରଦ ଗୌରବରେ ପ୍ରତିଷ୍ଠିତ । ଏହି ସଭ୍ୟତା କେତେକ ଦିଗରେ ଅଶେଷ ଉନ୍ନତିର ସୂଚନା ଦିଏ । ଏପରି ଉନ୍ନତି ମଣିଷ ଜାତିର ଇତିହାସରେ ହୁଏତ ପୂର୍ବରୁ କେବେ ସମ୍ଭବ ହୋଇ ନଥିଲା । ତେଣୁ ୟୁରୋପୀୟମାନେ ଯଦି ଇତିହାସର ବର୍ତ୍ତମାନ ପର୍ଯ୍ୟାୟକୁ ନିଜ ସହିତ ଜଡିତ କରିବାକୁ ଚାହେଁ, ତାହା ଦୋଷାବହ ନୁହେଁ । ସେହିପରି ଇତିହାସର ଏକ ବିସ୍ତୃତ ନିୟମ ବା ଶୃଙ୍ଖଳା ଘୋଷଣା କରି ୟୁରୋପ ଯଦି ସବୁଦିନେ ନିଜକୁ ଉନ୍ନତିର ଶିଖର ଦେଶରେ ପ୍ରତିଷ୍ଠା କରିବାକୁ ଚାହେଁ ବା ପୃଥିବୀର ଅନ୍ୟାନ୍ୟ ଅଞ୍ଚଳକୁ ନିଜପରି କରି ଗଢ଼ିବାର ଅକ୍ଷୟ କୀର୍ତ୍ତି ପାଇବାରେ ଲାଳାୟିତ ହୁଏ, ତା ଖୁବ୍ ସ୍ୱାଭାବିକ ।

ଇତିହାସ ସମ୍ପର୍କରେ ଉଭୟ ମାର୍କସୀୟ ମତ ଓ ହେଗେଲୀୟ ମତ ପରସ୍ପର ବିରୋଧୀ । ମାର୍କସ୍‌ଙ୍କ ମତ ଅନୁଯାୟୀ ଇତିହାସର-ଉଦ୍ଦେଶ୍ୟ ଉତ୍ପାଦନର ନିର୍ଦ୍ଦିଷ୍ଟ ପନ୍ଥା ଉପରେ ନିର୍ଭରଶୀଳ । କିନ୍ତୁ ହେଗେଲ୍‌ଙ୍କ ମତରେ ମଣିଷର ଆତ୍ମଶକ୍ତି ଇତିହାସର ଉଦ୍ଦେଶ୍ୟରେ ଅନ୍ତର୍ନିହିତ । ଅବଶ୍ୟ ପରିଣାମରେ ଏ ଦୁଇ ମତ ଭିତରେ ପ୍ରଭେଦ ନାହିଁ । ସ୍ୱାଧୀନତା ମଣିଷର ଆଦି ସମାଜରୁ କ୍ରମଶଃ ବିକଶିତ ହୋଇ ପ୍ରୁସିଆ ରାଜ୍ୟର ଗୌରବରେ ସମ୍ପୂର୍ଣ୍ଣ ବିକଶିତ ଓ ପ୍ରୁସିଆ ନିଜର ଗୌରବରେ ମଣିଷ ସଭ୍ୟତାର ଶିଖର ଦେଶରେ ପ୍ରତିଷ୍ଠିତ, ଏହାହିଁ ଇତିହାସ ସମ୍ପର୍କରେ ହେଗେଲ୍‌ଙ୍କର

ଅବସ୍ଥାର । ଇତିହାସର ଏହି କ୍ରମ ଉନ୍ନତ ବ୍ୟକ୍ତିର ସ୍ୱାଧୀନତାରୁ ଆରମ୍ଭ ହୋଇ, କେତେକ ପରେ ଅନେକ ଓ ପରିଶେଷରେ ସମସ୍ତଙ୍କର ସ୍ୱାଧୀନତାରେ ସମାପ୍ତି ଲଭିଛି । ବ୍ୟକ୍ତି-ସ୍ୱାଧୀନତାଠାରୁ ଗଣ-ସ୍ୱାଧୀନତା ପର୍ଯ୍ୟନ୍ତ ଇତିହାସର ଏହି ଅଗ୍ରଗତି ସହିତ ଆଦି କମ୍ୟୁନିଷ୍ଟ ଯୁଗରୁ ସାମନ୍ତବାଦ ଓ ବୁର୍ଜୁୟା ଗଣତନ୍ତ୍ର ଭିତର ଦେଇ ସମ୍ପୂର୍ଣ୍ଣ ସାମ୍ୟବାଦ । କମ୍ୟୁନିଷ୍ଟ ଗଣତନ୍ତ୍ରର ଅଭିବୃଦ୍ଧିର ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଇପାରେ ।

ହେଗେଲଙ୍କ ମତରେ ଏହି ଗଣ-ସ୍ୱାଧୀନତା ମଣିଷର ଆତ୍ମଶକ୍ତିରେ ନିହିତ ଓ ପ୍ରୁସିଆ ରାଜ୍ୟର ପରମ-ଶକ୍ତି ହେଗେଲଙ୍କ ପରମ-ଶକ୍ତି ଧାରଣାର ରାଜନୈତିକ ପରିପ୍ରକାଶ । ମାର୍କସ୍‌ଙ୍କ ମତରେ ହେଗେଲଙ୍କ ପରମ-ଶକ୍ତି ଇଂଲଣ୍ଡ, ଜର୍ମାନୀ ଓ କେତେକ ପରିମାଣରେ ଫ୍ରାନ୍‌ସର ନିର୍ଦ୍ଦିଷ୍ଟ ଶକ୍ତିରେ ପ୍ରକାଶ ପାଇପାରିଛି । କାରଣ ୟୁରୋପର ଏହି ଦେଶସବୁ ଉନ୍ନତ ପୁଞ୍ଜିବାଦ ଦେଶ । ତେଣୁ ଶ୍ରେଣୀ-ସଂଘର୍ଷ, ଯାହା କି ମାର୍କସ୍‌ଙ୍କ ମତରେ ଇତିହାସର ଆତ୍ମା, ଏହିସବୁ ଦେଶରେ ପୁଞ୍ଜିବାଦକୁ ଧ୍ୱଂସକରି ନୂତନ ସାମ୍ୟବାଦ ସଭ୍ୟତାର ମୂଳ ପତ୍ତନ କରିପାରିବ ।

ବର୍ତ୍ତମାନ ସଭ୍ୟତାର ନେତାମାନେ ପରବର୍ତ୍ତୀ ନୂତନ ସଭ୍ୟତାର ଅଗ୍ରଦୂତ ହୋଇପାରିବେ ନାହିଁ । ଏହା ଇତିହାସରେ କେବେହେଲେ ଘଟି ନାହିଁ । ଏପରି ହେବା ଅସମ୍ଭବ; କାରଣ ପ୍ରତ୍ୟେକ ସଭ୍ୟତାର ଉତ୍ପାଦନର ନିଜସ୍ୱ ପନ୍ଥା, ଚିନ୍ତାର ନିଜସ୍ୱ ଭଙ୍ଗୀ ଓ ନିଜସ୍ୱ କାର୍ଯ୍ୟକାରୀ ପ୍ରଣାଳୀ ରହିଛି ଓ ଏହି ସଭ୍ୟତାର ନେତାମାନେ ଏହିସବୁ ପନ୍ଥା, ଭଙ୍ଗୀ ବା ପ୍ରଣାଳୀ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ତେଣୁ କୌଣସି ସଭ୍ୟତାର ଉତ୍ପାଦନ ବା ଚିନ୍ତାର କାର୍ଯ୍ୟକାରୀ ଶକ୍ତି ଲୋପ ପାଇଗଲା ପରେ ବି ସେ ସବୁକୁ ପରିବର୍ତ୍ତନ କରିବା ଖୁବ୍ ସହଜସାଧ୍ୟ ନୁହେଁ । ସଭ୍ୟତାର ସମଗ୍ର ଚରିତ୍ର ସେହିସବୁ ଉତ୍ପାଦନ ଓ ଚିନ୍ତାର ଚାରିପାଖରେ ଗଢ଼ି ଉଠିଥାଏ, ତେଣୁ ମଣିଷର ବୁଦ୍ଧି ଯେତେ ପରିବର୍ତ୍ତନ ବା ପରିବର୍ଦ୍ଧନ ପାଇଁ ଆଗ୍ରହଶୀଳ ହେଲେ ବି ନିଜ ସହିତ ଓତଃପ୍ରୋତ ଭାବରେ ମିଶି ରହିଥିବା ଚିନ୍ତା, ଧାରଣା ଓ ନିଜର ସମସାମୟିକ ସଭ୍ୟତାର ଉପଯୋଗିତାକୁ ପରିତ୍ୟାଗ କରି ସଂପୂର୍ଣ୍ଣ ନୂତନ ଅବସ୍ଥାରେ ନୂତନ ଧ୍ୟାନଧାରଣାକୁ ଗ୍ରହଣ କରିବା ସହଜ ନୁହେଁ । ବିଶେଷ କରି କୌଣସି

ସଭ୍ୟତାର ଶିଖର ଦେଶରେ ରହି ସେହି ସଭ୍ୟତାକୁ ପରିଚାଳିତ କରୁଥିବା ଜାତି ବା ଦେଶ ପକ୍ଷରେ ନିଜର ସଭ୍ୟତାକୁ ପରିତ୍ୟାଗ କରି ନୂତନ ଅବସ୍ଥାର ନୂତନ ସଭ୍ୟତାକୁ ଗ୍ରହଣ କରିବା ପରି ସଂପ୍ରସାରଣଶୀଳ-ମାନସ ଲାଭ କରିବା ଆଦୌ ସହଜସାଧ୍ୟ ନୁହେଁ—ପ୍ରାୟ ଅସମ୍ଭବ ।

ମଣିଷ ସମାଜରେ ଶ୍ରେଣୀ-ସଂଘର୍ଷ ଯେ କେବେ ନଥିଲା, ଏ କଥା ମୁଁ କହୁନାହିଁ । ଇତିହାସରେ ବିଭିନ୍ନ ଶ୍ରେଣୀ ମଧ୍ୟରେ ସଂଘର୍ଷ ସବୁ ସମୟରେ ଲାଗି ରହିଛି ଓ ବର୍ତ୍ତମାନ ଏହି ଶ୍ରେଣୀ ସଂଘର୍ଷର କାର୍ଯ୍ୟକୁ ଭଲଭାବରେ ବୁଝିବାର ବେଳ ଆସିଛି । ଆବେଗପୂର୍ଣ୍ଣ ଭାବରେ ପସନ୍ଦ ବା ନାପସନ୍ଦ କରିବା ବା ଦେଶପ୍ରେମୀର ମନୋଭାବରେ ପରିଚାଳିତ ହୋଇ ଠିକ୍ ଭୁଲ ବିଚାର କରିବା ଇତିହାସର ଛାତ୍ର ପକ୍ଷରେ ସମୀଚୀନ ନୁହେଁ । ଶ୍ରେଣୀ-ସଂଘର୍ଷର ରୂପ ଓ ପ୍ରଣାଳୀ ନିରପେକ୍ଷ ଭାବରେ ବିଚାର ହେବା ଉଚିତ ।

ସମାଜରେ ଅସମାନତା ସବୁବେଳେ ରହିଛି ଓ ବିଭିନ୍ନ ଯୁଗରେ ଏହି ଅସମାନତାଯୋଗୁଁ ବିଭିନ୍ନ ଶ୍ରେଣୀମାନେ ସଂଘର୍ଷରେ ଲିପ୍ତ ହୋଇ ପଡ଼ିଛନ୍ତି—ଏ ବିଷୟରେ କାହାରି ସନ୍ଦେହ ନାହିଁ । ବିଭିନ୍ନ ଶ୍ରେଣୀର ଆଭ୍ୟନ୍ତରୀଣ ସଂଘର୍ଷ ଓ ବିଭିନ୍ନ ଜାତିର ବାହ୍ୟ ସଂଘର୍ଷ ଏ ଉଭୟ ପ୍ରାୟ ପାଖାପାଖି ଚାଲିଆସିଛି । ଟଏନ୍‌ବି ଏହି ଦୁଇ ସଂଘର୍ଷ କଥା ବାରମ୍ବାର କହିଛନ୍ତି ଓ ତାଙ୍କ ମତରେ ଏହି ଦୁଇ ସଂଘର୍ଷର ଘାତ ଫଳରେ ସଭ୍ୟତା ବିପର୍ଯ୍ୟସ୍ତ ହୋଇ ଧ୍ୱଂସ ହୋଇଯାଏ । ମାର୍କସ୍ ଅଭ୍ୟନ୍ତରର ପ୍ରୋଲେଟାରିଆଟ୍ ଓ ବାହାରର ପ୍ରୋଲେଟାରିଆଟ୍ ମଧ୍ୟରେ ଥିବା ପ୍ରଭେଦକୁ ଯଥେଷ୍ଟ ଧ୍ୟାନ ଦେଇ ବିଚାର କରି ନାହାନ୍ତି । କାରଣ, ତା ହେଲେ ସେ ଶ୍ରମିକମାନଙ୍କର ସାମ୍ୟମୂଳକ ସଂଗଠନକୁ ଭିତରର ପ୍ରୋଲେଟାରିଆଟ୍ ଯୋଗୁଁ ଓ ଶ୍ରମିକମାନଙ୍କର ଦାରିଦ୍ର୍ୟକୁ ବାହାରର ପ୍ରୋଲେଟାରିଆଟ୍ ଯୋଗୁଁ ବୋଲି କହିଥାନ୍ତେ ।

ଆଭ୍ୟନ୍ତରୀଣ ଯୁକ୍ତିର ଆଲୋଚନାଦ୍ୱାରା ଯେ କୌଣସି ଧାରାର ଫଳପ୍ରଦ ବିଚାର କରାଯାଇଥାଏ । ଶ୍ରମ-ଚାଳିତ ଉତ୍ପାଦନର ଶକ୍ତି ସହିତ ଉତ୍ପାଦନର କଠିନ ସଂପର୍କ ସବୁର ସଂଘର୍ଷର ପ୍ରକୃତି ଅନୁଧ୍ୟାନ କଲେ ଇତିହାସର ବସ୍ତୁତାନ୍ତ୍ରିକ ବିଶ୍ଳେଷଣର ମୂଳ ତତ୍ତ୍ୱ ବୁଝିହେବ ।

ବାସ୍ତବିକ ଏହି ସଂଘର୍ଷର ଯୁକ୍ତି ନିଜ ଭିତରେ ସ୍ୱୟଂ-ସଂପୂର୍ଣ୍ଣ । ଯଦିଓ ୟୁରୋପ ପରୀକ୍ଷା ନିରୀକ୍ଷା ପରେ ଏହିଜାତୀୟ ସଂଘର୍ଷର ଶୃଙ୍ଖଳାକୁ ପ୍ରାୟ ପରିତ୍ୟାଗ କରିଛି, ତଥାପି ଏସିଆର ଅନେକେ ଏହି ସଂଘର୍ଷର ଯୁକ୍ତି ଓ ଏହାର ନିଜସ୍ୱ ଅଗ୍ରଗତିର ଧାରଣାରେ ଏବେ ବି ନିମଗ୍ନ । ସମାଜ ଆଗ୍ରଗତି କରି ଚାଲିଛି ଓ କେବଳ ବସ୍ତୁତାନ୍ତ୍ରିକ ବିଶ୍ଳେଷଣ ଦ୍ୱାରା ଏହି ଅଗ୍ରଗତିର ସ୍ୱରୂପ ଉନ୍ମୋଚିତ ହୋଇପାରିବ, ଏହା ହିଁ ବିଶ୍ୱାସ । ଉତ୍ପାଦନର କ୍ରମ-ପରିଣତ ଶକ୍ତି ଓ କଠିନ ସଂପର୍କ ବା ମାଲିକ ଓ ସମ୍ପତ୍ତିହୀନ ଶ୍ରମିକ ମଧ୍ୟରେ ସଂଘର୍ଷ ହିଁ ଏହି ଗତିର, ଯାହାଦ୍ୱାରା ଏ ତାଲି ଉନ୍ମୋଚନ ସମ୍ଭବ । ଏ ଯୁକ୍ତି ଖୁବ୍ ସରଳ ଓ ବେଶ୍ ଉତ୍ତେଜନାପୂର୍ଣ୍ଣ । ସତେ ଯେପରି ବିଶ୍ୱର ବିହୁ ରହସ୍ୟ ଏହାଦ୍ୱାରା ଉନ୍ମୋଚିତ ହେଲା । କିନ୍ତୁ ଏ ରହସ୍ୟ କ'ଣ ? ସେ ହେଲା ଇତିହାସ ଇତିହାସ ନୁହେଁ । ଏଥିରେ ଉନ୍ନତ ବା ଅବନତ ନାହିଁ, ଯାହା ବର୍ତ୍ତମାନ ଉନ୍ନତର ଶିଖର ଦେଶରେ ବା ନିମ୍ନତମ ଉପତ୍ୟକାରେ ରହିଛି । ସେ ସବୁ ଅତୀତରେ ଠିକ୍ ସେମିତି ଥିଲି ଓ ଭବିଷ୍ୟତରେ ବି ରହିବ ।

ବର୍ତ୍ତମାନ କାଳରେ ଉତ୍ପାଦନର ପରିଣତ ଶକ୍ତି ଓ ଅପରିବର୍ତ୍ତନୀୟ ସଂପର୍କ ସବୁର ଏକ ସଂଘର୍ଷମୂଳକ ଅବସ୍ଥା ପୃଥିବୀର ସବୁଠି ଦେଖାଯାଏ । ଏହି ଅବସ୍ଥା ଯୋଗୁ ୟୁରୋପ ଓ ଆମେରିକା ସମସାମୟିକ ଇତିହାସର ଶିଖର ଦେଶରେ ଓ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳ ବିହୁତଳେ ରହିଛନ୍ତି । ମାର୍କସୀୟ ବିଚାରଧାରାରେ ଉତ୍ପାଦନର ଅସାମଞ୍ଜସ୍ୟ ହେତୁ ଯେଉଁ ବିଚ୍ଛିନ୍ନ ବିସ୍ଫୋରଣ ବା ବିପ୍ଳବ ପୃଥିବୀର ଏଠି ସେଠି ଘଟୁଛି, ସେଥିରେ ବିବ୍ରତ ହେବା ଉଚିତ ନୁହେଁ । ୟୁରୋପ ଓ ଆମେରିକାର ଉନ୍ନତ ଅବସ୍ଥା ସବୁଦିନେ ସେହିପରି ଥିଲି ଓ ସମଗ୍ର ଉତ୍ପାଦନ ପ୍ରଣାଳୀର ନିଜସ୍ୱ ସ୍ୱୟଂସମ୍ପୂର୍ଣ୍ଣ ଅଗ୍ରଗତି ଯୋଗୁଁ ସବୁଦିନେ ସେହିପରି ରହିବ ।

ବସ୍ତୁତାନ୍ତ୍ରିକ ବିଶ୍ଳେଷଣର ସାଧାରଣ ନିୟମ ସବୁ ଆଲୋଚନା କଲାବେଳେ ଆକସ୍ମିକ ଦୁର୍ଯୋଗସବୁକୁ ବାଦ୍ ଦେବାକୁ ପଡ଼ିବ । କାରଣ ବ୍ୟତିକ୍ରମସବୁ ଯଦି ବ୍ୟତିକ୍ରମଠାରୁ ଅଧିକ କିଛି ହୁଏ, ତା'ହେଲେ ସାଧାରଣ ନିୟମର ପ୍ରକୃତି ସବୁ ବଦଳିଯିବ । ସାଧାରଣ ନିୟମ ହେଲା ପୁଞ୍ଜିବାଦୀ ସମାଜର ନିଜସ୍ୱ-ଅଗ୍ରଗତି ଯୋଗୁଁ ପଶ୍ଚିମ ୟୁରୋପ ବା ଆମେରିକା ପରି ଏହାର ଅତି ଉନ୍ନତ ଅଞ୍ଚଳ ନୂତନ କମ୍ୟୁନିଷ୍ଟ ସମାଜର ଅଗ୍ରବାହକ

ହେବ । ସେହି ଯୁକ୍ତିରେ ଭବିଷ୍ୟତ ପରିବର୍ତ୍ତେ ଅତୀତକୁ ପର୍ଯ୍ୟାଲୋଚନା କଲେ, ଏହି ଅଞ୍ଚଳ ଅତୀତର ସାମନ୍ତବାଦୀ ବା ତା ପୂର୍ବବର୍ତ୍ତୀ ସମାଜମାନଙ୍କରେ ନିଶ୍ଚୟ ମୁଖ୍ୟ ସ୍ଥାନ ଅଧିକାର କରିଥିବ; କାରଣ ଯାହା ନିୟମ ତା ଭବିଷ୍ୟତ ଓ ଅତୀତ ଉଭୟ ପାଇଁ ନିୟମ ।

ଠିକ୍ କହିବାକୁ ଗଲେ, ଶ୍ରେଣୀ-ସଂଘର୍ଷ ଓ ସାମନ୍ତବାଦରୁ ପୁଞ୍ଜିବାଦ ପର୍ଯ୍ୟନ୍ତ ପରିବର୍ତ୍ତନରେ ମଣିଷ ସମାଜର ଯେଉଁ ଅଗ୍ରଗତି ଘଟିଛି, ସେହି ଇତିହାସରେ କୌଣସି ଜାତିର ଉନ୍ନତି ବା ଅବନତିର ସମସ୍ୟା ନ ରହିବା କଥା । ପୁଣି ଏହି ବିଶ୍ଳେଷଣ ଅନୁଯାୟୀ ଯଦି କୌଣସି ନିର୍ଦ୍ଦିଷ୍ଟ ସମୟରେ ଭାରତ ବା ଇଜିପ୍ଟ ଉନ୍ନତିର ଶିଖରଦେଶରେ ଅଧିଷ୍ଠିତ ହୁଏ, ତା ହେଲେ ସେହି ସ୍ଥାନ ସବୁ ସମୟ ପାଇଁ ଅପରିବର୍ତ୍ତନୀୟ ହୋଇ ରହିବ । ଅର୍ଥାତ୍ ଇତିହାସରେ ସବୁଦିନ ପାଇଁ ପୃଥିବୀର କିଛି ଅଞ୍ଚଳ ଆନନ୍ଦରେ ଉଦ୍ଭାସିତ ଓ ଅନ୍ୟ ଅଞ୍ଚଳ ଦୁଃଖରେ ମ୍ରିୟମାଣ ହୋଇ ରହିଥିବ । ୟୁରୋପୀୟ ବୁଦ୍ଧିଜୀବୀ ମାର୍କସୀୟ ବିଚାରଧାରାପ୍ରତି ଖୁବ୍ ସହାନୁଭୂତିଶୀଳ ନୁହେଁ । ଏହାସତ୍ତ୍ୱେ ସେ ଯେ ଏହି ବିଚାର ଧାରାକୁ ପର୍ଯ୍ୟାପ୍ତ ଭାବରେ ପରୀକ୍ଷା ନ କରି ମୋଟାମୋଟି ଗ୍ରହଣ କରି ନେଇଛି, ଏହା ତାତ୍ପର୍ଯ୍ୟପୂର୍ଣ୍ଣ । ମାର୍କସ୍‌ଙ୍କର ସବୁପ୍ରକାର ତତ୍ତ୍ୱ ଓ ଆଲୋଚନାର ଶେଷ ପରିଣତି ହେଉଛି ୟୁରୋପକୁ ସବୁଦିନ ପାଇଁ ଅତି ଗୌରବମୟ ସ୍ଥାନରେ ପ୍ରତିଷ୍ଠିତ କରି ରଖିବା । ତାଙ୍କର ଚେଷ୍ଟା ୟୁରୋପୀୟ-ଆତ୍ମାରେ ନିଜକୁ ପ୍ରତିଷ୍ଠିତ କରିବା । ବାସ୍ତବିକ୍ ବର୍ତ୍ତମାନ କାଳରେ ୟୁରୋପରେ ସୃଷ୍ଟି ହୋଇଥିବା ଇତିହାସ ସମ୍ପର୍କରେ ବିଭିନ୍ନ ଧାନ ଧାରଣା ପରି ବସ୍ତୁତାନ୍ତ୍ରିକ ବିଶ୍ଳେଷଣର ଗୋଟିଏ ଉଦ୍ଦେଶ୍ୟ, ସେ ହେଉଛି ଯାହା ଅଛି ତାକୁ ସେହିପରି ରଖିବା, ଅନ୍ତତଃ ୟୁରୋପୀୟ ଗୌରବ ଠିକ୍ ସେହିପରି ରହୁ, ଏହା ହିଁ ତାଙ୍କର ଇଚ୍ଛା । ଆଜି ଇତିହାସ ସମ୍ପର୍କରେ ଏହି ଦ୍ୱନ୍ଦାତ୍ମକ, ବସ୍ତୁତନ୍ତ୍ର ଅନ୍ତର୍ନିହିତ, ଯୁକ୍ତିସମ୍ମତ ଗଢ଼ଣକୁ ପରୀକ୍ଷା କଲେ ମନେହେବ ଯେ, ଏହା ଦ୍ୱନ୍ଦାତ୍ମକ ନୁହେଁ, ବସ୍ତୁତାନ୍ତ୍ରିକ ବି ନୁହେଁ । ଏପରି କି ଇତିହାସସମ୍ମତ ବି ନୁହେଁ ।

# ୪

# ଇତିହାସର ବସ୍ତୁ ଓ ଆତ୍ମା

ସମାଜର ଅର୍ଥନୈତିକ ଶକ୍ତି ସହିତ ଇତିହାସର ସମ୍ପର୍କ ଉପେକ୍ଷା କରିହେବ କି ? ବର୍ତ୍ତମାନ ଶତାବ୍ଦୀରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଐତିହାସିକ ରଚନା ପ୍ରକାଶ ପାଇଛି । ଅର୍ଥନୈତିକ ଶକ୍ତିର କାର୍ଯ୍ୟକାରଣ ଦୃଷ୍ଟିରୁ ଆମେରିକା ସଭ୍ୟତାର ଉତ୍ପତ୍ତିର ଗୋଟିଏ ଉତ୍କୃଷ୍ଟ ଆଲୋଚନା ଚାର୍ଲସ ଓ ମେରି ବେୟାର୍ଡ଼ ଲେଖିଛନ୍ତି । ସେହିପରି ମେଇନେକ୍ ମଣିଷର ଆତ୍ମା ଓ ତତ୍‌ସଂପୃକ୍ତ ଅନୁଭୂତି ଦୃଷ୍ଟିରୁ ଆଧୁନିକ ଷ୍ଟେଟ୍ ବା ରାଜ୍ୟର ଉତ୍ପତ୍ତିର ଅନ୍ୟ ଏକ ଉତ୍କୃଷ୍ଟ ଆଲୋଚନା କରିଛନ୍ତି । ଏହି ଉଭୟ ଆଲୋଚନାର ଆପେକ୍ଷିକ ଗୁରୁତ୍ୱ ସ୍ଥିର କରିବା ସହଜ ନୁହେଁ; କାରଣ ଉଭୟ ସମାନ ଆନନ୍ଦଦାୟକ ଓ ଅସମ୍ପୂର୍ଣ୍ଣ । ଇତିହାସର ଉପଲବ୍‌ଧି ପାଇଁ ଏହି ଆଲୋଚନାମାନ ଅନେକ ସାହାଯ୍ୟ କରେ, କିନ୍ତୁ ସେ ସାହାଯ୍ୟ ଯଥେଷ୍ଟ ନୁହେଁ । ଅସମ୍ପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ଅନେକ ସମୟରେ ଭ୍ରମାତ୍ମକ ହୋଇଥାଏ ।

ମୁଁ ଓ ବର୍ଲିନ୍ ବିଶ୍ୱବିଦ୍ୟାଳୟରେ ମୋ'ପରି ଅନେକ, ହରମାନ୍ ଅଙ୍କେନ୍‌ଙ୍କ ଦ୍ୱାରା ଇତିହାସ ପ୍ରତି ଆକୃଷ୍ଟ ହୋଇଥିଲୁ । ଅଙ୍କେନ୍ ନିଜର ଆଲୋଚନାରେ କିପରି ଶତାବ୍ଦୀବ୍ୟାପୀ ବ୍ରିଟିଶ୍ ବୈଦେଶିକ ନୀତି ଭାରତର ସାମରିକ ନିରାପତ୍ତା ଦୃଷ୍ଟିରୁ ନିୟନ୍ତ୍ରିତ ହେଉଥିଲା, ତାହା ଦର୍ଶାଇଛନ୍ତି । ତାଙ୍କର କୌଣସି ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ଅଛି କି ନାହିଁ କହିବା ସହଜ ନୁହେଁ । କିନ୍ତୁ ଏକଥା ସତ ଯେ, ସେ ବହୁ ଐତିହାସିକ ଘଟଣାର ଜଞ୍ଜାଳ ଭିତରୁ ଏକ ନିରବଚ୍ଛିନ୍ନ ସମ୍ପର୍କ ଓ ସୂତ୍ର ଆବିଷ୍କାର କରିଥିଲେ । ତାଙ୍କର ଆଲୋଚନାରେ ହୁଏତ କିଛି ଅତିରଞ୍ଜନ ଅଛି ଓ ତାଙ୍କର ମତାମତ

ହୁଏତ ଇତିହାସ ସମ୍ପର୍କରେ ଶେଷ ମତାମତ ନ ହୋଇପାରେ ; କିନ୍ତୁ ସେ ଦୃଷ୍ଟିରୁ କାହା ମତାମତକୁ ବା ଚୂଡ଼ାନ୍ତ ବୋଲି କହିହେବ ? ଇତିହାସ ଦୃଷ୍ଟିରୁ ବସ୍ତୁ ଓ ଆତ୍ମା ଭିତରେ ଏକ କୃତ୍ରିମ ମତଭେଦ ଅଣାଯାଇଛି । ବସ୍ତୁ ଓ ଆତ୍ମାକୁ ଅବଶ୍ୟ ପରସ୍ପରର ପରିପ୍ରେକ୍ଷିରେ ଉପଲବ୍ଧି କରିବା ଉଚିତ ; କିନ୍ତୁ ନାନା ବିଭ୍ରାନ୍ତି ଯୋଗୁଁ ତା ସମ୍ଭବ ହୋଇନାହିଁ ।

ଇତିହାସ ଦୃଷ୍ଟିରୁ ଯଦି ବସ୍ତୁକୁ ଅର୍ଥନୈତିକ ଉଦ୍ଦେଶ୍ୟ ଓ ସମାଜର ନିୟନ୍ତ୍ରକ ଭାବରେ ଓ ଆତ୍ମାକୁ ସମାଜର ସାଧାରଣ ଉଦ୍ଦେଶ୍ୟ ଓ ହିତ ଭାବରେ ଗ୍ରହଣ କରାଯାଏ, ତାହେଲେ ଉଭୟର ସମ୍ପର୍କର ଯଥାର୍ଥ ଉପଲବ୍ଧି ହୋଇନାହିଁ ବୋଲି କୁହାଯିବ । ବସ୍ତୁ ଓ ଆତ୍ମାର ପରସ୍ପର ସମ୍ପର୍କ ତିନୋଟି ଦିଗରୁ ବିଗ୍ଭର କରାଯାଇପାରେ । ପ୍ରଥମତଃ ଗୋଟିଏ ଅନ୍ୟ ଉପରେ ନିର୍ଭରଶୀଳ, ଦ୍ୱିତୀୟରେ ପ୍ରତ୍ୟେକ ଅନ୍ୟଠାରୁ ସ୍ୱାଧୀନ, ତୃତୀୟରେ ପ୍ରତ୍ୟେକ ସ୍ୱୟଂସମ୍ପୂର୍ଣ୍ଣ । ଆଧୁନିକ ସଭ୍ୟତା ପ୍ରଥମ ଦୁଇଟି ସମ୍ପର୍କର ପ୍ରକୃତ ଅନୁଧ୍ୟାନ କରିଛି । ଯେଉଁମାନେ ଇତିହାସ ତିଆରି କରନ୍ତି ବା ଯେଉଁମାନେ ଇତିହାସ ଲେଖନ୍ତି, ସେମାନେ ଏହି ଉଭୟ ଦୃଷ୍ଟିଭଙ୍ଗୀଦ୍ୱାରା ଆଜିପର୍ଯ୍ୟନ୍ତ ପରିଗ୍ଭଳିତ ହୋଇଛନ୍ତି । ଫଳରେ ଉଭୟର ସୃଷ୍ଟି ବା ଉପଲବ୍ଧିର ବିଭ୍ରାନ୍ତି ଲକ୍ଷ୍ୟ କରାଯାଇ ପାରେ ।

ଯେତେବେଳେ କେତେକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସଫଳ ହେବା ସଙ୍ଗେ ସଙ୍ଗେ ସ୍ୱତଃ ଅନ୍ୟ କେତେକ ଉଦ୍ଦେଶ୍ୟ କାର୍ଯ୍ୟକାରୀ ହୁଏ, ସେତେବେଳେ ଇତିହାସର ଏକ ନିର୍ଭରଶୀଳ ସମ୍ପର୍କ ଗଢ଼ିଉଠେ । ଇତିହାସର ସ୍ମିଥ୍-ମାର୍କସ୍ ସମାଜବାଦମାନଙ୍କ ମତରେ ଅର୍ଥନୈତିକ ଉଦ୍ଦେଶ୍ୟ ସ୍ୱତଃ ସାଧାରଣ ଉଦ୍ଦେଶ୍ୟକୁ ସଂଗ୍ଭଳିତ କରେ । ସେହିପରି ଗାନ୍ଧିବାଦୀ ସମାଜବାଦମାନଙ୍କ ମତରେ ସାଧାରଣ ଉଦ୍ଦେଶ୍ୟ ଅର୍ଥନୈତିକ ଉଦ୍ଦେଶ୍ୟକୁ ସଂଗ୍ଭଳିତ କରେ । ଗୋଟିକରୁ ଅନ୍ୟକୁ ସ୍ୱତଃ ସଂଗ୍ଭଳନରେ ଏହି ବିଶ୍ୱାସ, ଇତିହାସର ସୃଷ୍ଟି ଓ ଉପଲବ୍ଧି ଉଭୟକୁ ବିଭ୍ରାନ୍ତ କରିଛି । ଏପରି ଅବସ୍ଥାରେ ଆତ୍ମା ଓ ବସ୍ତୁ ଉଭୟ ପରସ୍ପର ସହିତ ଏକ ବିରୁଦ୍ଧ ସମ୍ପର୍କରେ ଅବସ୍ଥାପିତ । ଆତ୍ମା ଯଦି ବସ୍ତୁର ଭାଷା ନ ବୁଝେ ଓ ସେଥିପ୍ରତି ଯଥେଷ୍ଟ ଧ୍ୟାନ ନ ଦିଏ, ତା'ହେଲେ ବସ୍ତୁ ନିଜର କାର୍ଯ୍ୟକାରୀ ଶକ୍ତି ବୁଝିନେବା ସଙ୍ଗେ ସଙ୍ଗେ ଆତ୍ମାକୁ ଅବଜ୍ଞା କରେ । ଏହା ଫଳରେ ଯେଉଁ

ଅମୀମାଂସିତ ଅବସ୍ଥାର ସୃଷ୍ଟି ହୁଏ, ତା'ର ପରିଣତି ସ୍ୱରୂପ ଆତ୍ମା ସତତ ଯେପରି ପ୍ରତିଶୋଧ ନେବା ଭଙ୍ଗୀରେ ବସ୍ତୁକୁ ସମ୍ପୂର୍ଣ୍ଣ ଭିନ୍ନଭାବେ ନୂଆ ଭାବରେ ଓ ପୁଣି ନୂଆ ବିଭ୍ରାନ୍ତି ଦେବାକୁ ଅଗ୍ରସର ହୁଏ । ଯେହେତୁ ଅର୍ଥନୈତିକ ଉଦ୍ଦେଶ୍ୟର ସାଧାରଣ ଉଦ୍ଦେଶ୍ୟକୁ ସ୍ୱତଃ ସଂଗୃଳନ ବା ଏହାର ବିପରୀତ-ଉଭୟ ସମାନ ରୂପେ ଅସମ୍ଭବ । ଆଧୁନିକ ଚିନ୍ତା ଆତ୍ମା ଓ ବସ୍ତୁର ନିର୍ଭରଶୀଳ ସମ୍ପର୍କ ପରିବର୍ତ୍ତେ ଉଭୟଙ୍କୁ ସ୍ୱାଧୀନ ଭାବରେ ଅନୁଧ୍ୟାନ କରିବାକୁ ଚେଷ୍ଟା କରିଛି ।

ଇତିହାସର ଆଧୁନିକ ବ୍ୟାଖ୍ୟାକାର, ବିଶେଷ ଉଦାରପନ୍ଥୀ ଓ ସାମ୍ୟବାଦରେ ବିଶ୍ୱାସ କରୁଥିବା ରାଜନୀତିଜ୍ଞମାନଙ୍କର ବିଶ୍ୱାସ ଯେ, ଯଦି ଆତ୍ମା ଓ ବସ୍ତୁକୁ ବିଭିନ୍ନ ଭାବରେ ଉପାସନା କରିହେବ, ତାହେଲେ ଇତିହାସର ଯଥାର୍ଥ ଉପଲବ୍ଧି ସଙ୍ଗେ ସଙ୍ଗେ ଇତିହାସର ସୃଷ୍ଟି ସମ୍ଭବ ହେବ । ଏପରି ଧାରଣା ପ୍ରମାଦପୂର୍ଣ୍ଣ । କାରଣ, ଆତ୍ମା ଓ ବସ୍ତୁ ପରସ୍ପର ପ୍ରତି ଯଥେଷ୍ଟ ଈର୍ଷାପରିପୂର୍ଣ୍ଣ ଓ ପରସ୍ପରକୁ ନଷ୍ଟ କରିବାକୁ ଚେଷ୍ଟିତ । ବାସ୍ତବିକ୍ ଏକମାତ୍ର କାର୍ଯ୍ୟକାରୀ ଉପାୟ ହେଉଛି, ଇତିହାସର ଅନୁସନ୍ଧାନ ଓ ସୃଷ୍ଟିର ଉଭୟ ଆତ୍ମା ବା ସାଧାରଣ ଉଦ୍ଦେଶ୍ୟ ଓ ବସ୍ତୁ ବା ଅର୍ଥନୈତିକ ଉଦ୍ଦେଶ୍ୟକୁ ସ୍ୱୟଂ ସମ୍ପୂର୍ଣ୍ଣ ଭାବରେ ବିଗ୍ରହ କରିବା । ତା ହେଲେ ଉଭୟ ପରିଚ୍ଛନ୍ନ ଓ ସଂସ୍କୃତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଚରିତ୍ରଗତ-ରୂପ ପରିବର୍ତ୍ତନ କରି ନୂତନଭାବରେ ପରସ୍ପରପ୍ରତି ସମ୍ବେଦନଶୀଳ ହେବେ । ଅନେକ ଏହି ନୂତନ ଆବଶ୍ୟକତା ସମ୍ପର୍କରେ ଅବହିତ ହେଲେଣି ଓ ଆତ୍ମା-ବସ୍ତୁର ଏହି ସ୍ୱୟଂସମ୍ପୂର୍ଣ୍ଣ ସମ୍ପର୍କ ଇତିହାସର ତତ୍ତ୍ୱ-ଉପଲବ୍ଧିରେ ଯଥାର୍ଥ ସହାୟକ ହେବ ।

ଆଜିପର୍ଯ୍ୟନ୍ତ ପ୍ରତ୍ୟେକ ସମାଜ ବା ସଭ୍ୟତା କୌଣସି ନା କୌଣସି ନିର୍ଦ୍ଦିଷ୍ଟ ନିୟନ୍ତ୍ରଣ ବା ଶିଳ୍ପଦକ୍ଷତା ଦିଗରେ ଅଗ୍ରଗତି କରିଛି । ଯେତେଦିନ ପର୍ଯ୍ୟନ୍ତ ଏହି ଦକ୍ଷତା ଅଧିକରୁ ଅଧିକ ହୋଇଛି, ଏହାର ସମ୍ପର୍କରେ ଦୁଇ ପ୍ରକାର ପ୍ରତିକ୍ରିୟା ପ୍ରକାଶ ପାଇଛି । କେତେକ ଏହି ଉନ୍ନତିକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିଛନ୍ତି—କାରଣ ସମାଜ ସମ୍ପର୍କରେ ସେମାନଙ୍କର ଧାରଣା ସହିତ ଏହି ଉନ୍ନତିର କୌଣସି ସାମଞ୍ଜସ୍ୟ ନାହିଁ ; କିନ୍ତୁ ଏପରି ପ୍ରତିବାଦ ଯେତେ ସରଳ ହେଲେ ମଧ୍ୟ ବାସ୍ତବ ଘଟଣାବଳୀ ଉପରେ

ଏହି ପ୍ରତିବାଦର ବିଶେଷ ପ୍ରଭାବ ନାହିଁ । ଅନ୍ୟ ଏକ ପ୍ରତିକ୍ରିୟା ହେଉଛି ଯେ, କୌଣସି ଗୋଟିଏ ଦିଗରେ ଏହି କ୍ରମବର୍ଦ୍ଧିଷ୍ଣୁ ଦକ୍ଷତାକୁ ସମାଜର ସମଗ୍ର ଦକ୍ଷତା ଭାବି ଓ ଏଥିରେ ପରିବର୍ତ୍ତନର ଚିନ୍ତା ନ କରି, ନିଜକୁ ସମ୍ପୂର୍ଣ୍ଣଭାବରେ ଏହି ଦକ୍ଷତା ସହିତ ଜଡ଼ିତ କରିଦେବା ।

ଯେତେବେଳେ ମଣିଷ ଆଂଶିକ ଦକ୍ଷତାକୁ ସମଗ୍ର ଦକ୍ଷତା ବୋଲି ଭାବି ସେଥିରେ ନିଜର ଧ୍ୟାନଧାରଣାର ପ୍ରତିରୂପ ଦେଖେ, ସେତେବେଳେ ସେ ସେହି ପ୍ରଣାଳୀର ଆଭ୍ୟନ୍ତରୀଣ ଶକ୍ତିକୁ ନିରପେକ୍ଷଭାବରେ ବିଚାର କରିବାର ଶକ୍ତି ହରେଇ ବସେ । ଏହା ଫଳରେ ସେହି ପ୍ରଣାଳୀ ଗୋଟିଏ ଦିଗରେ କ୍ରମଶଃ ବଢ଼ିଚାଲେ ଓ ପରିଶେଷରେ ସମାଜ ପୁରାତନ ଅତିକାୟ ପ୍ରାଣୀପରି ଗୋଟିଏ ଦିଗରେ ବଢ଼ିଯାଏ ; କିନ୍ତୁ ଡିନୋସର ପରି ଅତିକାୟ ପ୍ରାଣୀମାନେ ଅତ୍ୟଧିକ ବୃଦ୍ଧିହେତୁ ନିଜ ଚାପରେ ନିଜେ ଏତେଦୂର ଅକ୍ଷମ ହୋଇପଡ଼ିଲେ ଯେ, ଅନ୍ୟ ଦିଗରେ ଦକ୍ଷତା ହାସଲ କରିଥିବା ପ୍ରାଣୀମାନଙ୍କ ସହିତ ପ୍ରତିଯୋଗିତାରେ ନ ପାରି କ୍ରମଶଃ ନିଶ୍ଚିହ୍ନ ହୋଇଗଲେ । ପ୍ରତି ସଭ୍ୟତା ସେହିପରି ପ୍ରଥମେ ଯେଉଁ ଦିଗରେ ଅଗ୍ରସର ହୋଇଥାଏ, ସେହି ଦିଗରେ କ୍ରମଶଃ ବଢ଼ି ସର୍ବୋତ୍ତମ ଦକ୍ଷତା ହାସଲ କରେ ଓ ପରେ ନିଜର ଭାର ବା ବାହାର ଶକ୍ତିର ଚାପରେ ନଷ୍ଟ ହୋଇଯାଏ । ଯେତେଦିନ ପର୍ଯ୍ୟନ୍ତ ଦକ୍ଷତା ବୃଦ୍ଧିଲାଭ କରୁଥାଏ, ସେତେଦିନ ପର୍ଯ୍ୟନ୍ତ ସ୍ୱାସ୍ଥ୍ୟ ଶକ୍ତି ଓ ସାଧାରଣ ଜୀବନୀଶକ୍ତି ବିକଶିତ ହେଉଥାଏ ।

ସମାଜଭିତରେ ସାଧାରଣ ଲୋକେ ପ୍ରତିଯୋଗିତାମୂଳକ ଶ୍ରେଣୀ-ସଂଘର୍ଷରେ ଲିପ୍ତ ରହି ନିଜ ନିଜର ଅବସ୍ଥାରେ ଉନ୍ନତି କରନ୍ତି ଓ ସେମାନେ ବାହାର ଶକ୍ତିର ଆକ୍ରମଣକୁ ପ୍ରତିରୋଧ କରି ଅନ୍ୟାନ୍ୟ ସମାଜରୁ ଜୀବନ-ରସ ଆହରଣ କରିପାରନ୍ତି । କିନ୍ତୁ ଯେତେ ବେଳେ ସର୍ବୋତ୍ତମ ଦକ୍ଷତା ଆସିଗଲା, ସେତେବେଳେ ଠିକ୍ ଅଗ୍ରଗତି ପରି ବାଟ ବନ୍ଦ ହୋଇଯାଏ, ଭିତରର ଶ୍ରେଣୀ-ସଂଘର୍ଷ ଅସହ୍ୟ ହୋଇଉଠେ ଓ ଜାତିର ବିଭିନ୍ନତାରେ ଏହି ସଂଘର୍ଷର ମୀମାଂସା ଖୋଜାଯାଏ ଏବଂ ଅନ୍ୟାନ୍ୟ ସମାଜ ସହିତ ବାହ୍ୟ ସଂଘର୍ଷ କ୍ରମଶଃ ଘୋର ବେଦନା-ଦାୟକ ଓ ଶକ୍ତିର ବହିର୍ଭୂତ ହୋଇପଡ଼େ । ଏପରି ଅବସ୍ଥାରେ ସେହି ନିର୍ଦ୍ଦିଷ୍ଟ ସଭ୍ୟତାର ପତନ ଅବଶ୍ୟମ୍ଭାବୀ ହୋଇଉଠେ । ଯଦି ଜାତିଗତ

ମୀମାଂସା ସଫଳ ହୁଏ, ତେବେ ଏହି ଶେଷ ପରିଣତି କିଛୁଦିନ ପଛେଇ ଯାଏ ; କିନ୍ତୁ ଯେତେବେଳେ ଜାତିର ନିୟନ୍ତ୍ରଣରେ ସ୍ଥାଣୁତ୍ୱ ଆସେ ଓ ବାହାରର ଶକ୍ତି କ୍ରମଶଃ ବୃଦ୍ଧିପାଏ, ସେତେବେଳେ ଶେଷ ପରିଣତି ପ୍ରାୟ ସ୍ପଷ୍ଟ ହୋଇଉଠେ । ଏହି ଦୁଇ ଅବସ୍ଥା, ଅର୍ଥାତ୍ ଶ୍ରେଣୀରୁ ଜାତି ବା ଜାତିରୁ ଶ୍ରେଣୀ ଦିଗରେ ପରିବର୍ତ୍ତନ ଓ ବାହାରେ ବିଭିନ୍ନ ଜାତିର ଆପେକ୍ଷିକ ଶକ୍ତିରେ କ୍ଷୟବୃଦ୍ଧି ଆଜିପର୍ଯ୍ୟନ୍ତ ସବୁ ସମାଜରେ ଘଟି ଆସିଛି ।





# ଶ୍ରେଣୀ ଓ ଜାତି

ଅନେକଙ୍କର ଧାରଣା ଯେ, ଜାତିପ୍ରଥା ବିଶେଷ କରି ଏକ ଭାରତୀୟ ସମସ୍ୟା । ହୁଏତ ଜାତି ପ୍ରଥାର ଦୀର୍ଘ ସ୍ଥାୟିତ୍ୱ ଓ ଏହାର ନିର୍ଦ୍ଦିଷ୍ଟ ରୂପରେଖ ପାଇଁ ଏହାକୁ ଏକ ଭାରତୀୟ ସମସ୍ୟା ବୋଲି କୁହାଯାଇପାରେ ; କିନ୍ତୁ ଏକ ଅନୁଷ୍ଠାନ ଭାବରେ (ଯେଉଁଠି ବିଭିନ୍ନ ଶ୍ରେଣୀର ଲୋକେ ପରସ୍ପର ସହିତ ବିଶେଷ କଳହ ନ କରି ନିଜ ନିଜର ଯଥାର୍ଥ ସ୍ଥାନ ବାଛି ନେଇଛନ୍ତି ।) ଜାତି ପୃଥିବୀର ସବୁ ଦେଶରେ ଦେଖାଯାଏ । ଜନ୍ମଗତ ବା ଧର୍ମଗତ ବିଶେଷତ୍ୱ ଜାତିପ୍ରଥାର ଆବଶ୍ୟକୀୟ ଗୁଣ ନୁହେଁ । ଗୋଟିଏ ଶ୍ରେଣୀରୁ ଆଉ ଗୋଟିଏ ଶ୍ରେଣୀ ମଧ୍ୟରେ ଥିବା ଗତିହୀନତା ଅନୁଧ୍ୟାନ କଲେ ଜାତି ପ୍ରଥାର ବିଶେଷତ୍ୱ ବୁଝିହେବ । ଜାତିର ଗଢ଼ଣରେ କୌଣସି ନୀଚ ଜାତିର ବ୍ୟକ୍ତି ଉଚ୍ଚ ଜାତିକୁ ଉନ୍ନୀତ ହେବା ଯେପରି ଅସମ୍ଭବ, ସମଗ୍ର ଜାତି ସେହିପରି ତଳ ସ୍ତରରୁ ଉପର ସ୍ତରକୁ ଯିବା ସମ୍ଭବ ନୁହେଁ । ଶ୍ରେଣୀ ହେଉଛି ଗତିଶୀଳ ଜାତି ଓ ଜାତି ହେଉଛି ଗତିହୀନ ଶ୍ରେଣୀ । ଯେକୌଣସି ସମାଜ ବା ସଭ୍ୟତାରେ ଶ୍ରେଣୀରୁ ଜାତି ଓ ପୁଣି ଜାତିରୁ ଶ୍ରେଣୀକୁ ଏହି ସଂକ୍ରମଣ ଲକ୍ଷ୍ୟ କରାଯାଇପାରେ । ସମାଜର ଆଭ୍ୟନ୍ତରୀଣ କାର୍ଯ୍ୟଶୀଳତାରେ ଏହି ସଂକ୍ରମଣ ଅନ୍ତର୍ନିହିତ । ଆରମ୍ଭରୁ ନ୍ୟାୟ ଓ ସମାନତାର ଦାବୀ ଯୋଗୁଁ ଏହି ସଂକ୍ରମଣ ସମ୍ଭବ ହୁଏ; କିନ୍ତୁ ଅଧିକାଂଶ କ୍ଷେତ୍ରରେ ଆରମ୍ଭର ଏହି ଦାବୀ ବିକୃତ ଓ ଦୁର୍ନୀତିଗ୍ରସ୍ତ ହୋଇପଡ଼େ ।

ପ୍ରାଚୀନ ରୋମ୍‌ରେ ସିଜର୍‌ଙ୍କ ସହିତ ସଂପୃକ୍ତ ଉଚ୍ଚ ଜାତିର ଲୋକେ ଓ ନୀଚ ସ୍ତରର ଅଗଣିତ ଜନତା ସବୁ ସମୟରେ ଶ୍ରେଣୀ-

ସଂଘର୍ଷରେ ଲିପ୍ତ ରହିଥିଲେ । ଯେତେବେଳେ ରୋମ୍ ଅଧିକରୁ ଅଧିକ ଶକ୍ତିଶାଳୀ ଓ ଧନୀ ହେଉଥିଲା, ସେତେବେଳେ ଦେଶ ଭିତରେ ଏହି ସଂଘର୍ଷ ସହଜ ଭାବରେ ସ୍ୱୀକୃତ ହେଉଥିଲା ଓ କୌଣସି ଶ୍ରେଣୀ ଅନ୍ୟ ଉଚ୍ଚତର ଶ୍ରେଣୀକୁ ଉଠିବା ସମ୍ଭବ ହେଉଥିଲା । ପୁଣି ଯେତେବେଳେ ଏହି ସଂଘର୍ଷ ସମାଜର ସ୍ଥିତିକୁ ତୀବ୍ର ଆଘାତ କରୁଥିଲା ଓ ସାଙ୍ଗେ ସାଙ୍ଗେ ବାହାର ଶକ୍ତିର ଚାପ ପ୍ରବଳ ହେଉଥିଲା, ସେତେବେଳେ ନ୍ୟାୟ ଓ ସମାନତା ଆଳରେ ଏକ ସୁଦୃଢ଼ ଏବଂ ବୌଦ୍ଧିକ ନିୟନ୍ତ୍ରଣ ଓ ଶାସନସଂସ୍ଥା ପାଇଁ ଦାବୀ କରିଯାଉଥିଲା । ବିଶେଷ କରି ରୋମ୍ ସାମ୍ରାଜ୍ୟର ପରିପ୍ରେକ୍ଷିତରେ ଶ୍ରେଣୀରୁ ଜାତି ଓ ଜାତିରୁ ଶ୍ରେଣୀ ସଂଗଠନ ବିଭିନ୍ନ ସ୍ତର ଦେଇ ଅଗ୍ରଗତି କରିଛି ।

ଜାତି ଏକ ସମୟରେ ରୋମ୍‌ର ଅର୍ଥ ଓ କ୍ଷମତା ସୃଷ୍ଟି କରିବାରେ ବ୍ୟବହୃତ ହେଉଥିଲା । ସେହିପରି ଶ୍ରେଣୀ-ସଂଘର୍ଷ ମାଧ୍ୟମରେ ଅନେକ ସମୟରେ ରୋମ୍‌ର ନାଗରିକ ସମାଜରେ ସାମ୍ୟତା ଆଣିବାକୁ ଚେଷ୍ଟା କରୁଥିଲା, ଜାତି ପରେ ଆଭ୍ୟନ୍ତରୀଣ ବିଭ୍ରାଟ ଓ ବିସମ୍ବାଦ ବିରୁଦ୍ଧରେ ସମାଜର ରକ୍ଷା-କବଚ ଭାବରେ ବ୍ୟବହାର ହେଲା ; କିନ୍ତୁ ପରିଶେଷରେ ଜାତିପ୍ରଥାରୁ ବି କୌଣସି ନ୍ୟାୟ ମିଳିବା ସମ୍ଭବ ହେଲା ନାହିଁ ଓ ସମାଜରେ ଘୋର ବିଭ୍ରାଟ ଉପସ୍ଥିତ ହେଲା । ଶ୍ରେଣୀରୁ ଜାତି ଓ ଜାତିରୁ ଶ୍ରେଣୀମୂଳକ ଏହିସବୁ ଅଗ୍ରଗତି କେତେକ ସୀମିତ ଦିଗରେ ସର୍ବୋତ୍ତମ ଦକ୍ଷତା ହାସଲ କରିବା ପାଇଁ ରୋମ୍‌ର ଉଦ୍ୟମ ସହିତ ଅଂଗାଗୀ ଭାବରେ ଜଡ଼ିତ ।

ଜାତି ବିରୁଦ୍ଧରେ ଭାରତରେ ଦୁଇଟି ନିର୍ଦ୍ଦିଷ୍ଟ ଆନ୍ଦୋଳନର ସନ୍ଧାନ ମିଳେ । ପ୍ରଥମ ଆନ୍ଦୋଳନ ପ୍ରାୟ ୨୬୦୦ ବର୍ଷତଳେ ଆରମ୍ଭ ହୋଇଥିଲା ଓ ପ୍ରାୟ ପାଞ୍ଚ ଶତାବ୍ଦୀ ଧରି ଚାଲିଥିଲା । ସେହି ସମୟର ସାହିତ୍ୟରୁ ଜଣାଯାଏ ଯେ, ଏହି ଆନ୍ଦୋଳନ ମୁଖ୍ୟତଃ ସମାଲୋଚନା ଓ ସଂସ୍କାରର ଆନ୍ଦୋଳନ । ଏହା ଫଳରେ ଜାତି-ପ୍ରଥାରେ କେତେକ ପରିମାଣରେ ଉଦାର ମନୋଭାବ ଆସିଥିଲା ଓ ସେହି ସମୟରେ ସମାଜରେ ଏକ ସାଧାରଣ ଚଞ୍ଚଳତା ଲକ୍ଷ୍ୟ କରାଯାଇପାରେ । ଏପରି କି ଗୌତମ ବୁଦ୍ଧଙ୍କୁ ବାଧ୍ୟହୋଇ ବହୁ ଋଣଗ୍ରସ୍ତ ବ୍ୟକ୍ତି ଓ ନିଜ ମାଲିକମାନଙ୍କର ବିନାନୁମତିରେ ଯେଉଁ ନୀଚ ଜାତିର ଲୋକମାନେ ଧର୍ମତ୍ୟାଗ କରୁଥିଲେ, ସେମାନଙ୍କ

ବିରୁଦ୍ଧରେ ସଂଘର ଦ୍ୱାର ବନ୍ଦ କରିଦେବାକୁ ହେଲା । ନିଜ ଜାତିରୁ ବହିଷ୍କୃତ ହୋଇଯିବା ମନୋଭାବ ସହିତ ଦେଶରେ ରାଜନୈତିକ ଶକ୍ତି ଓ ଅର୍ଥନୈତିକ ସ୍ୱଚ୍ଛଳତା ବୃଦ୍ଧିଲାଭ କଲା । ଦେଶର ବିଭିନ୍ନ ରାଜ୍ୟମାନେ ଉପରଠାଉରିଆ ଭାବରେ ହେଲେ ବି ପରସ୍ପର ସହିତ ମିଳିତ ହେବାକୁ ଚେଷ୍ଟା କଲେ । ତେଣୁ ଦେଶରେ ଆଭ୍ୟନ୍ତରୀଣ ଯୁଦ୍ଧ-ବିଗ୍ରହ ବନ୍ଦ ହେଲା ଓ ବାଣିଜ୍ୟ ବିକାଶ ଲାଭକଲା । ଅଧିକ ଅଧିକ ଲୋକେ ଶିଳ୍ପ ଓ କାରିଗରୀ କାର୍ଯ୍ୟ ପ୍ରତି ଆକୃଷ୍ଟ ହେଲେ, କୃଷି ଉନ୍ନତି କଲା ଓ ଜାତୀୟ ଆୟର ବୃଦ୍ଧି ହେଲା ।

ସେହି ସମୟରେ ୟୁରୋପୀୟମାନଙ୍କର ଏକ ବଡ଼ ଆକ୍ରମଣ ଦେଶର ନିକଟକୁ ଆସିବା ପୂର୍ବରୁ ସଫଳତାର ସହିତ ପ୍ରତିରୋଧ କରିହୋଇ ପାରିଲା ଏବଂ ଭାରତରୁ ଧର୍ମ ଓ ସଂସ୍କୃତିର ଦୂତମାନେ ଦୂର ଦେଶକୁ ପଠାଗଲେ । ଅନ୍ୟାନ୍ୟ ଦେଶମାନଙ୍କୁ ନିଜର ରାଜନୈତିକ ଅଧୀନତାରେ ରଖି ଶୋଷଣ କରିବା ଭାରତର ପ୍ରକୃତିଗତ ନୁହେଁ; କିନ୍ତୁ ସେ ସମୟରେ ଭାରତର ବାଣିଜ୍ୟ ବହୁ ଦୂରଦେଶମାନଙ୍କରେ ବିସ୍ତାର ଲାଭ କରିଥିବ ଓ ସେହି ଅନୁଯାୟୀ ଦେଶରେ ବହୁ ବସ୍ତୁ ଉତ୍ପାଦିତ ହେଉଥିବ । ଚିନ୍ତାରେ ଏକ ଯୁକ୍ତିସମ୍ମତ ମନୋଭାବ, ଏକ ସାଧାରଣ ଆଗ୍ରହ ଓ ସଚେତନତା ଲକ୍ଷ୍ୟ କରିହୋଇପାରେ । ଜାତି ବିରୁଦ୍ଧରେ ଓ ଶ୍ରେଣୀ ସପକ୍ଷରେ ଏ ସବୁ ଆନ୍ଦୋଳନ ସହିତ ସମଗ୍ରଭାବରେ ସମାଜର ଦକ୍ଷତାରେ ଆଂଶିକ ବୃଦ୍ଧି ସମ୍ଭବ ।

ଏହି ସମୟର ପ୍ରାୟ ୪୦୦ ବର୍ଷ ପରେ ଭାରତୀୟ ସମାଜର ସୃଷ୍ଟିଶୀଳ ଶକ୍ତି ପୁଣି ଥରେ ଜାତିପ୍ରଥା ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭକଲା । ସମସାମୟିକ ସାହିତ୍ୟରୁ ଯାହା ଜଣାଯାଏ, ଜାତିପ୍ରଥା ବିରୁଦ୍ଧରେ ଏହା ଏକ ପ୍ରତ୍ୟକ୍ଷ ନିନ୍ଦାର ଆନ୍ଦୋଳନ । ସବୁ ବର୍ଗରୁ ଜାତିପ୍ରଥାକୁ ତୀବ୍ର ନିନ୍ଦା କରାଯାଇଛି ; କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ଏକ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ଆନ୍ଦୋଳନ ନୁହେଁ ଓ ଆଗଥର ପରି ଏଥର ବି ସମାଜରେ ଏକ ସାଧାରଣ ସଚେତନତା କ୍ଷତା ଲକ୍ଷ୍ୟ କରାଯାଇପାରେ । ହୁଏତ ପୂର୍ବ ଆନ୍ଦୋଳନଠାରୁ ଏହା କେତେକ ପରିମାଣରେ ଅଧିକତର ଉନ୍ନତ ।

ଏହି ଦୁଇ ଶ୍ରେଣୀ-ଆନ୍ଦୋଳନର ମଧ୍ୟବର୍ତ୍ତୀ ସମୟରେ ଓ ବିଶେଷ କରି ପ୍ରାୟ ଆନ୍ଦୋଳନ ପରଠାରୁ ଆଜି ପର୍ଯ୍ୟନ୍ତ ଏହି ଦୀର୍ଘ ସମୟ ଧରି ଜାତିର ପ୍ରାଧାନ୍ୟ କ୍ରମଶଃ ପ୍ରତିଷ୍ଠିତ ହୋଇଛି । ପ୍ରଥମେ ପ୍ରଥମେ ସେହି ଆରମ୍ଭ ସମୟରେ ଏହି ପ୍ରାଧାନ୍ୟର ଉଦ୍ୟମ ଅନେକ ପରିମାଣରେ ଦୁର୍ବଳ ଓ ଅନିଶ୍ଚିତ ଥିଲା; କାରଣ ସେ ସମୟର ସାମାଜିକ ନିୟମ-କାନୁନରେ ଯଥେଷ୍ଟ ମିଳାମିଶାର ମନୋଭାବ ଥିଲା ଏବଂ ଲୋକମାନଙ୍କୁ ରାଜି କରେଇ ଓ ସେମାନଙ୍କ ମତନେଇ ଖାଦ୍ୟ, ଅଭ୍ୟାସ ବା ବିବାହ ପ୍ରଭୃତିରେ ଜାତିର ସିଡ଼ିରେ ଉପରତଳ ହେବା ସମ୍ଭବ ହେଉଥିଲା । ସେହି ସମୟରେ ଭାରତୀୟ ସମାଜର ବିଦେଶୀ ଆକ୍ରମଣକୁ ପ୍ରତିହତ କରିବାର ଶକ୍ତି ଅନେକ କମି ଆସିଥିଲା । ଯଦିଓ ସଫଳ ପ୍ରତିରୋଧ କରିବାର ବା ବିଦେଶୀ ପ୍ରଭାବକୁ ଗ୍ରହଣ କରିନେବାର ଶକ୍ତି କିଛି କିଛି ଥିଲା ; କିନ୍ତୁ ଜାତିପ୍ରଥା ସପକ୍ଷରେ ପରବର୍ତ୍ତୀ ଆନ୍ଦୋଳନ ଦୀର୍ଘ ସମୟ, ପ୍ରାୟ ୧୨୦୦ ବର୍ଷ ଧରି ଚାଲି ଆସିଛି । ଏହି ସମୟରେ ଜାତିପ୍ରଥାର ନିୟମ-କାନୁନ କ୍ରମଶଃ କଠିନ ଓ ଅନମନୀୟ ହୋଇଛି । ଏପରି କି ଶଙ୍କରାଚାର୍ଯ୍ୟ ପରମସତ୍ୟ ଓ ସାଂସାରିକ ସତ୍ୟ ମଧ୍ୟରେ ଥିବା ପ୍ରଭେଦକୁ ବିସ୍ତୃତ କରି ଆତ୍ମାର ପରମାତ୍ମା ସନ୍ଧାନ ଓ କ୍ଷୁଦ୍ର ସାଂସାରିକ ନିୟନ୍ତ୍ରଣକୁ ମିଳିତ କରିବାର ଦାର୍ଶନିକ ଭିତ୍ତି ଗଢ଼ି ତୋଳିଲେ । ବାରମ୍ବାର ବିଦେଶୀ ଆକ୍ରମଣ ଓ କ୍ରମବର୍ଦ୍ଧିଷ୍ଣୁ ଘୋର ଦାରିଦ୍ର୍ୟରେ ଭାରତୀୟ ସମାଜ ପଙ୍ଗୁ ଓ ସମ୍ପୂର୍ଣ୍ଣ ଶକ୍ତିଶୂନ୍ୟ ହୋଇଗଲା । ଏହି ଶକ୍ତିଶୂନ୍ୟତା ପାଇଁ ଜାତିପ୍ରଥା ବା ଶଙ୍କରାଚାର୍ଯ୍ୟଙ୍କର ବିରାଟ ଭୂମିକୁ ଦାୟୀ କରି କିଛି ଲାଭ ନାହିଁ ।

ଏସବୁ ଭ୍ରମପ୍ରମାଦ ମୂଳରେ ଭାରତୀୟ ସମାଜର କେତେକ ନିର୍ଦ୍ଦିଷ୍ଟ ଓ ସୀମିତ ଦିଗରେ ସର୍ବୋତ୍ତମ ଦକ୍ଷତା ହାସଲ କରିବାର ଚେଷ୍ଟା ନିହିତ । ଫଳରେ ଭାରତୀୟ ସମାଜ ସମଗ୍ର ଭାବରେ ଅଗ୍ରଗତି କରିପାରିଲା ନାହିଁ ଓ ଅନ୍ୟ ଦିଗରେ ଦକ୍ଷତା ହାସଲ କରିବାକୁ ଚେଷ୍ଟା କରୁଥିବା ଅନ୍ୟ ସମାଜଦ୍ୱାରା ଆଚ୍ଛନ୍ନ ହୋଇପଡ଼ିଲା । କେତେକ ପରିମାଣରେ ଜାତି ଓ ଏହି ଜାତିଗୁଷ୍ଟି-ମାନସ ମୃତପ୍ରାୟ ଭାରତୀୟ ସମାଜକୁ ରକ୍ଷା-କବଚ ଭାବରେ ରକ୍ଷା କଲା । ଏପରି ଗୋଟାଏ ରକ୍ଷା-କବଚ ତିଆରି ହେବାରେ ଯଥେଷ୍ଟ ଆଶ୍ଚର୍ଯ୍ୟ ହେବାର ଅଛି । ତା ସତ୍ତ୍ୱେ ଏ ସେତେ ଆବର୍ଜନାକୁ

ଘୋଡ଼େଇ ରଖିପାରିଲା, ତାହା ବି କମ୍ ଆଶ୍ଚର୍ଯ୍ୟର କଥା ନୁହେଁ । ଜାତିପ୍ରଥା ଓ ଶଙ୍କରାଚାର୍ଯ୍ୟଙ୍କ ସହିତ ସ୍ଥାଣୁ ଓ ନିର୍ବେଦ ହୋଇ ନ ଯାଇ ସେମାନଙ୍କ ସାମାଜ୍ୟ ବ୍ୟକ୍ତିତ ଭାରତୀୟ ସମାଜ ବିଭ୍ରାନ୍ତ ଓ ବିନଷ୍ଟ ହୋଇ ଯାଇଥିଲେ କଅଣ ହୋଇଥାନ୍ତା, ସେକଥା ଆଜି ଚିନ୍ତାକରି ହେଉନାହିଁ । ସେ ସମସ୍ତ ଅତିକ୍ରମ କରିଯାଇଛୁ । ମହାତ୍ମା ଗାନ୍ଧୀ ଆସିବାପରେ ଭାରତୀୟ ସମାଜର ଜାତି ଗଠନରେ ପୁଣି ଏକ ନୂତନ ଚଞ୍ଚଳତା ଦେଖା ଦେଇଛି, ସମାଜରେ ଏକ ସମଗ୍ର ଦକ୍ଷତା ଆଣିବାର ଉଦ୍ୟମ ସହିତ ତଳୁ ଉପରକୁ ଓ ଉପରୁ ତଳକୁ ପୁଣି ଯିବା ଆସିବା ଆରମ୍ଭ ହୋଇଛି । କିନ୍ତୁ ଏହା ସହିତ ଏକଥା ସ୍ମରଣ ରଖିବାକୁ ହେବ ଯେ, ମହାତ୍ମା ଗାନ୍ଧୀଙ୍କ ପୂର୍ବରୁ ବହୁ ଉଦାର ଓ ମାନବିକ-ପନ୍ଥୀ ଏବଂ ଧର୍ମମୂଳକ ଦାର୍ଶନିକ ଅନୁଷ୍ଠାନ ସବୁ ଜାତି ଗଠନର କଠିନତାକୁ ସହଜ ଓ ସରଳ କରିବା ପାଇଁ ପଥପ୍ରଦର୍ଶକ ଭାବରେ ଅନେକ କାର୍ଯ୍ୟ କରିଛନ୍ତି ।

ଇତିହାସର-ଦର୍ଶନ ହୁଏତ ଶ୍ରେଣୀ ଓ ଜାତି ସମ୍ପର୍କରେ ଏହି ପରିବର୍ତ୍ତନରେ ନିର୍ଦ୍ଦିଷ୍ଟ ଛନ୍ଦର ସନ୍ଧାନ ପାଇପାରେ ; କିନ୍ତୁ ଯଥେଷ୍ଟ ଐତିହାସିକ ତଥ୍ୟର ଅଭାବ ହେତୁ ଭାରତୀୟ ସମାଜର ଶ୍ରେଣୀ ଓ ଜାତି ଆନ୍ଦୋଳନକୁ ଏକ ମୋଟାମୋଟି ତତ୍ତ୍ୱଭାବରେ ଗ୍ରହଣ କରିଯାଇପାରେ । ଭାରତରେ 'ଜାତିପ୍ରଥା' ଭାବରେ ପରିଚିତ ଏହି ନିର୍ଦ୍ଦିଷ୍ଟ ଅନୁଷ୍ଠାନର ଯେ ଆରମ୍ଭ କେଉଁଠି, ସେ ବିଷୟରେ କୌଣସି ସଠିକ ତଥ୍ୟ ନାହିଁ । ବହୁଦିନ ପର୍ଯ୍ୟନ୍ତ ଏହି ଜାତିପ୍ରଥା ଲୋକଙ୍କ ସହିତ ମିଳିମିଶି ନିଜକୁ ସମାଜରେ ଗ୍ରହଣୀୟ କରାଇ ପାରିଲା । ଅନ୍ୟ ଦିଗରେ ଏହି ଜାତିପ୍ରଥା ହେତୁ ସମାଜରେ ଘୋର ସ୍ଥାଣୁତ୍ୱ ବ୍ୟାପିଗଲା । ଯେତେ ବିଭିନ୍ନ ବିଚ୍ଛିନ୍ନ ଅବସ୍ଥାରେ ଏହି ଜାତିପ୍ରଥା ନିଜକୁ ଗ୍ରହଣୀୟ କରାଇପାରିଲା, ସେଥିରେ ଯେ କେହି ଆଶ୍ଚର୍ଯ୍ୟ ହେବ । ପୃଥିବୀର ଅନ୍ୟ କୌଣସି ସଚେତନ ବା ପ୍ରଗତିବାଦୀ ସଭ୍ୟତାରେ ବି ଏହା ସମ୍ଭବ ହୋଇନାହିଁ; କିନ୍ତୁ ଧର୍ମ ଓ ଆଧିଭୌତିକ ସ୍ତରରେ ବିଶେଷକରି ଏହି ମିଳାମିଶା ସମ୍ଭବ ହେଲା ଓ ସାମାଜିକ ସ୍ତରରେ ନାନା ଗଣ୍ଡଗୋଳ ଲାଗି ରହିଲା । କେବଳ ଯେ ଅନ୍ୟାୟ ବଢ଼ିଲା ତା ନୁହେଁ, କେତେକ ଗୋଷ୍ଠୀ ଓ ବୈଦିକ ଗଠନ ସହିତ ଜାତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇପଡ଼ିଲା । ସମାଜରେ ସାଧାରଣ ଅକ୍ଷମତା ଓ ଦାରିଦ୍ର୍ୟ

ବଢ଼ିବା ସଙ୍ଗେ ସଙ୍ଗେ ଏହ୍ଵ ପ୍ରଭେଦ ସ୍ପଷ୍ଟ ହୋଇଉଠିଲା ଏବଂ ଜାତିପ୍ରଥା ବିଲୋପ ହେବା ପରିବର୍ତ୍ତେ ଆହୁରି ଦୃଢ଼ ହେଲା ।

କିନ୍ତୁ ଭାରତୀୟ ଜାତିପ୍ରଥାଦ୍ଵାରା ଏପରି ଏକ ସମ୍ମିଶ୍ରଣର ଉଦ୍ୟମ ଆରମ୍ଭ ହେଲା ଯେ, ଗୋଷ୍ଠୀ, ଧର୍ମ, ଭାଷା ବା ବର୍ଣ୍ଣ କିଛିହେଲେ ତାକୁ ବ୍ୟାହତ କରିପାରିଲା ନାହିଁ । ଦେଶ ଭିତରେ ଗୋଟିଏ ଜାତି ଅନ୍ୟ ଜାତି ସହିତ ଭଲରେ ମିଳିମିଶି ଚଳିବାର ଯେଉଁ ରୋମାଞ୍ଚକର ପରିସ୍ଥିତି ସୃଷ୍ଟିହେଲା, ଏଇଥିରେହିଁ ବୋଧହୁଏ ଭାରତୀୟ ଉଦାରତା, ଆତ୍ମସନ୍ତୋଷ ଓ ସାମ୍ରାଜ୍ୟବିରୋଧୀ ମନୋଭାବର ବୀଜ ନିହିତ । ଭାରତରେ ଶ୍ରେଣୀ ଓ ଜାତି-ସଂଘର୍ଷର ଆନ୍ଦୋଳନର ଇତିହାସରେ ଅନେକ ରତ୍ନ ପ୍ରଚ୍ଛନ୍ନ ହୋଇ ରହିଛି । ଏହା ସତ୍ତ୍ଵେ ଏହାର ବାହ୍ୟ ଉଜ୍ଜ୍ଵଳତାକୁ ଭୁଲିଗଲେ ଚଳିବ ନାହିଁ । ଭିତରର ଜାତିପ୍ରଥା ବାହାରର କ୍ଷୟ ସହିତ ଜଡ଼ିତ । ସମାଜରେ ଦକ୍ଷତା ବଢ଼ିବା ସଙ୍ଗେ ସଙ୍ଗେ ଏହା ଭିତରର ବିଭିନ୍ନ ଶ୍ରେଣୀର ଚଞ୍ଚଳତା ସହିତ ସଂପୃକ୍ତ ।

ଆମେରିକାର ସାମାଜିକ ପରିସ୍ଥିତିରେ ସେଠାରେ ଶ୍ରେଣୀପାର୍ଥକ୍ୟ ଅଛି କି ନାହିଁ, ଏ ବିଷୟରେ ଅନେକ ଦେଶୀ ଓ ବିଦେଶୀ ପର୍ଯ୍ୟବେକ୍ଷକ ପ୍ରଶ୍ନ କରିଛନ୍ତି । ଶ୍ରେଣୀ ସହିତ ଜାତିକୁ ଏକ କରି ଦେଖିବାର ଯେଉଁ ମନୋଭାବ, ସେଥିରୁ ଏ ବିଭ୍ରାନ୍ତିର ଉତ୍ପତ୍ତି । ୟୁରୋପର ପୁରାତନ ସାମାଜିକ ଗୋଷ୍ଠୀସବୁ ଜାତି ଚିହ୍ନ କେବେହେଲେ ଛାଡ଼ିପାରି ନାହାନ୍ତି । ଏପରି କି ୟୁରୋପରେ ବିଭିନ୍ନ ଶ୍ରେଣୀ ଯେତେବେଳେ ଖୁବ୍ ସଚଳ ହୋଇ ଉଠିଥିଲେ ଓ ନିମ୍ନତର ଶ୍ରେଣୀରୁ ଉଚ୍ଚତର ଶ୍ରେଣୀକୁ ଯିବା ସହଜତର ଥିଲା, ସେତେବେଳେ ବି ସାଧାରଣ ଗଣତାନ୍ତ୍ରିକ ବ୍ୟବହାର ଓ ଜାତି ଜାତି ମଧ୍ୟରେ ମିଶ୍ର ବିବାହ ଖୁବ୍ ସହଜ ବା ସମ୍ଭବ ହେଉ ନ ଥିଲା; କିନ୍ତୁ ଆମେରିକାରେ ବ୍ୟକ୍ତି ଓ ଶ୍ରେଣୀ ପକ୍ଷରେ ଏତେ ଚଞ୍ଚଳ ଉପର ସ୍ତରକୁ ଯିବା ସମ୍ଭବ ହେଲା ଓ ଏହା ସହିତ ସଂପୃକ୍ତ ଆହାର ଓ ବିବାହ ହେବାର ଅଭ୍ୟାସରେ ଗଣତାନ୍ତ୍ରିକ ମନୋଭାବ ଏତେ ଶୀଘ୍ର ବ୍ୟାପ୍ତ ହୋଇପଡ଼ିଲା ଯେ, ପର୍ଯ୍ୟବେକ୍ଷକମାନଙ୍କ ପକ୍ଷରେ ଅନେକ ସମୟରେ ଜାତି ଓ ଶ୍ରେଣୀର ପାର୍ଥକ୍ୟ ବୁଝିବା ସମ୍ଭବ ହେଲାନାହିଁ । ଅଳ୍ପ କେତେକ ଗୋଷ୍ଠୀ, ଯେପରି କି ବଷ୍ଟନ ସହରର କୁଳୀନ ବ୍ରାହ୍ମଣ ବା ସାଧାରଣ ଭାବରେ ନିଗ୍ରୋ

ଓ ଶ୍ୱେତାଙ୍ଗଗୋଷ୍ଠୀ ବ୍ୟତୀତ ଆମେରିକାରେ ଜାତିପ୍ରଥା ନାହିଁ କହିଲେ ଚଳେ, କିନ୍ତୁ ଶ୍ରେଣୀ ରହିଛି । ପ୍ରତି ଶ୍ରେଣୀର ଆୟ, କ୍ଷମତା ବା ଆଭିଜାତ୍ୟ ଅନ୍ୟଠାରୁ ଅଲଗା ଏବଂ ନିମ୍ନ ଆୟ ଓ ଆଭିଜାତ୍ୟର ଶ୍ରେଣୀ ସବୁସମୟରେ ଉପର ସ୍ତରକୁ ଉଠିବାକୁ ଚେଷ୍ଟିତ । ଯେତେଦିନ ପର୍ଯ୍ୟନ୍ତ ସମାଜଭିତରେ ଏହି ଅସମାନତା ଦୂର କରିବାପାଇଁ ଆନ୍ଦୋଳନ ଚାଲିଥିବ, ସେତେଦିନ ପର୍ଯ୍ୟନ୍ତ ଶ୍ରେଣୀ ଗଠନ ଓ ଶ୍ରେଣୀ-ସଂଘର୍ଷ ରହିଥିବ । ଏହି ସଂଘର୍ଷ ଫଳରେ ଆମେରିକାର ଶ୍ରମିକଶ୍ରେଣୀ ଯେତେ ଯେତେ ସୁବିଧା ନିଜପାଇଁ ହାସଲ କରି ପାରିଛନ୍ତି, ସେଥିପାଇଁ ସେମାନଙ୍କର ଆନ୍ଦୋଳନ ଯେତିକ ଦାୟୀ, ଆମେରିକା ଅର୍ଥନୀତିର ବଢିପାରିବାର କ୍ଷମତା ବି ଠିକ୍ ସେତିକି ଦାୟୀ । କିନ୍ତୁ ଭବିଷ୍ୟତରେ ଯେଉଁଦିନ ଶିଳ୍ପ-ଦକ୍ଷତା ପରିପୂର୍ଣ୍ଣତା ଲାଭ କରିବ, ପୁଣି ସେହି ଅଣ୍ଡାଗଳ ଓ ଅମୀମାଂସିତ ସମସ୍ୟା ଆସି ଦେଖାଦେବ ।

ବାହାରର ବିଭିନ୍ନ ସମାଜ, ଯେଉଁମାନେ ବିଭିନ୍ନ ଦିଗରେ କ୍ଷମତା ହାସଲ କରିବେ, ସେମାନଙ୍କର ଗ୍ରୁପ ତ ବଢ଼ିବ, ତା ସହିତ ଭିତରର ଶ୍ରେଣୀ ଆନ୍ଦୋଳନ ଅତ୍ୟନ୍ତ ଉଦ୍‌ବେଗଜନକ ହୋଇ ଉଠିବ । ସେତେବେଳେ ଆମେରିକାର ଲୋକମାନଙ୍କୁ ଜାତିପ୍ରଥା ଓ ଘୋର ସାମାଜିକ ବିଭ୍ରାଟ ଓ କ୍ଷୟ ମଧ୍ୟରୁ ଗୋଟିକୁ ବାଛି ନେବାକୁ ପଡ଼ିବ । ସେମାନେ ଜାତିର ନିୟନ୍ତ୍ରଣକୁ ଗ୍ରହଣ କଲେ ବି ଚୂଡ଼ାନ୍ତ ବିନାଶକୁ କେବେଦିନ ଏଡେଇଦେଇ ପାରିବେନି । ବର୍ତ୍ତମାନ ବି ଶ୍ରମିକମାନଙ୍କର ସଭିସବୁ ଜାତିଆଣ ସଭାପରି ହୋଇଗଲଣି ଓ ସେମାନଙ୍କ ମଧ୍ୟରେ ଯେଉଁ ଏକତା ଲକ୍ଷ୍ୟ କରଯାଉଛି, ସେମାନେ ଶ୍ରମିକ ବୋଲି ନୁହେଁ ବରଂ ସେମାନେ କୌଣସି ନିର୍ଦ୍ଦିଷ୍ଟ ଶିଳ୍ପ ବା କାରଖାନାରେ କାମ କରୁଥିବା ହେତୁ ଏହି ଏକତା ଏପର୍ଯ୍ୟନ୍ତ ସ୍ୱାଭାବିକ ଭାବରେ ଦୃଢ଼ ହୋଇନାହିଁ । ତେଣୁ ଗୀତ ଗାଇ ବା ସେହିପରି ଅନ୍ୟାନ୍ୟ କାର୍ଯ୍ୟ କରି ଏକତାର ମନୋଭାବ ଆଣିବାକୁ ପଡୁଛି ।

ଆଜି ହୁଏତ ଏହି ଏକତା ଏକ ଚଳମାନ ଶକ୍ତିର ଅସ୍ତ୍ର ପରି ମନେ ହେଉଛି । କିନ୍ତୁ ଭବିଷ୍ୟତରେ ସେହି ନିର୍ଦ୍ଦିଷ୍ଟ ଗୋଷ୍ଠୀ ପାଇଁ ଏହା ଏକ ରକ୍ଷା-କବଚରେ ରୂପାନ୍ତରିତ ହୋଇଯିବା ଖୁବ୍ ସମ୍ଭବ ।

ଆମେରିକାର ସାମାଜିକ ଚିନ୍ତାରେ ଠିକ୍ ୟୁରୋପ ପରି ଅସ୍ପଷ୍ଟ ଓ ଜାତିମୂଳକ ଧାରଣା ସବୁ ଡ଼ୁଗୁରିତ ହେଲାଣି, ଯେପରିକି 'ସମ୍ମତ ଅଞ୍ଚଳ ରାଜନୀତିର ପରିସରରୁ ସମ୍ମତ ଅଞ୍ଚଳର ବହିଷ୍କାର,' 'ସମବାୟ ମୂଳକ କର୍ମୀ ସମାଜ' ବା 'କାର୍ଯ୍ୟମୂଳକ ଆଭିଜାତ୍ୟ' ପ୍ରଭୃତି । ଦରକାର ସମୟରେ ଏହି ଧାରଣା ସବୁ ବେଶ୍ ସୁବିଧାରେ ବ୍ୟବହାର କରାଯାଇପାରିବ । ଇତିମଧ୍ୟରେ ଆମେରିକାର ଯୁବଶକ୍ତି, ଜୀବନ ଶକ୍ତି ଓ ଆମେରିକା ଅର୍ଥନୀତିର ଆଗକୁ ବଢ଼ିପାରିବାର କ୍ଷମତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଏହା ମଧ୍ୟ ସ୍ୱୀକୃତ ଯେ, ଆମେରିକାର ବିଭିନ୍ନ ଶ୍ରେଣୀ ଯଥେଷ୍ଟ ଜୀବନଶକ୍ତି ଓ ଦମ୍ଭର ସହିତ ଜାତିପ୍ରଥା ଓ ତାହାର କଳଙ୍କରୁ ନିଜକୁ ଦୂରେଇ ରଖିପାରିଛନ୍ତି ।

ଆଧୁନିକ ୟୁରୋପର ଇତିହାସ ନିଜର ଅପ୍ରତିହତ କ୍ଷମତା ବଳରେ ସମଗ୍ର ପୃଥିବୀକୁ ଆଚ୍ଛନ୍ନ କରି ରଖିଛି ଓ ବିଶେଷ କରି ପ୍ରାୟ ଗତ ୨୦୦ ବର୍ଷ ତଳୁ ଏହି ଇତିହାସ ଜାତି ନିୟନ୍ତ୍ରଣରୁ ଦୂରେଇ ଯାଇଛି । ପ୍ରଭୁ ପାଖରେ କ୍ରୀତଦାସ ପରି କାର୍ଯ୍ୟ କରୁଥିବା ଶ୍ରମିକ କ୍ରମଶଃ ମୁକ୍ତି ପାଇ ସ୍ୱାଧୀନ କୃଷି ବା ଶ୍ରମିକ ହୋଇପାରିଛି । ସେହିପରି ବିଭିନ୍ନ ଜାତି ନିୟନ୍ତ୍ରଣରେ ସଙ୍କୁଚିତ କାରିଗରମାନଙ୍କର ପୁରାତନ ଗିଲ୍ଡ଼ ବା ସଂସ୍ଥା ଆଜି ନାହିଁ । ତା ପରିବର୍ତ୍ତରେ ବଡ଼ ବଡ଼ ଶିଳ୍ପ କାରଖାନାମାନ ଗଢ଼ି ଉଠିଛି ଓ ସେ ସବୁରେ କାରିଗରୀ ଶ୍ରମିକମାନେ ଜାତି ନିୟନ୍ତ୍ରଣରେ ସଙ୍କୁଚିତ ନୁହନ୍ତି । ଗଣତନ୍ତ୍ରର ବିଧି ବ୍ୟବସ୍ଥା ହେତୁ ରାଜନୈତିକ କ୍ଷମତା କ୍ରମଶଃ ସାଧାରଣ ଜନତାର ଦଳ ବା ଶ୍ରମିକ ଗୋଷ୍ଠୀର ହାତକୁ ଆସିଛି ।

ସେହିପରି ମଣିଷର ମାନସିକ ଜଗତରେ ବିଜ୍ଞାନର ଅନୁସନ୍ଧାନ ପ୍ରକୃତିର ବହୁ ରହସ୍ୟ ଉଦ୍‌ଘାଟନ କରିଛି ଓ ଆଜିପର୍ଯ୍ୟନ୍ତ ଯାହାକୁ ଲୋକେ ସ୍ପଷ୍ଟ ଆଲୋକିତ ବୋଲି ଭାବୁଥିଲେ, ସେଠାରେ ବହୁ ଆବର୍ଜ୍ଜନା ଓ ଅନ୍ଧକାରର ସନ୍ଧାନ ପ୍ରକାଶ ପାଇଛି । ଯୁକ୍ତିସମ୍ମତ ବସ୍ତୁର ଆଧୁନିକ ଚିନ୍ତାର ଭିତ୍ତି ହୋଇଛି ଓ ଆଜି ୟୁରୋପୀୟମାନେ ପୂର୍ବରୁ ଜଣା ନ ଥିବା ଯଥେଷ୍ଟ ସାମାଜିକ ଗୌରବର ଅଧିକାରୀ ହୋଇଛନ୍ତି । କିନ୍ତୁ ଏସବୁ ସତ୍ତ୍ୱେ ୟୁରୋପର ଗୌରବ କ୍ରମଶଃ କମି ଆସୁଛି । ଶିଳ୍ପ ଉନ୍ନତି ପ୍ରାୟ ଶେଷ ପର୍ଯ୍ୟାୟରେ ଆସି ପହଞ୍ଚିଲାଣି ଓ ଯୁଦ୍ଧ ପ୍ରସ୍ତୁତି ସମଗ୍ର ଭାବରେ ୟୁରୋପର ଉନ୍ନତ ଜୀବନ-ଯାପନ ପ୍ରଣାଳୀକୁ ବ୍ୟାହତ କରୁଛି । ଶ୍ରେଣୀ-ସଂଘର୍ଷ କ୍ରମଶଃ ଅସହ୍ୟ ଓ

ଅର୍ଥହାନ ହୋଇପଡ଼ୁଛି । ଅଭିଳଷିତ ସାମ୍ୟତା ତ ଆସୁନାହିଁ, ତା ପରିବର୍ତ୍ତେ ବିଭ୍ରାଟ ବୃଦ୍ଧିଲାଭ କରୁଛି ଓ ଲୋକେ ବିଭ୍ରାଟ ପରିବର୍ତ୍ତେ ନ୍ୟାୟ୍ୟତ ସ୍ଥିତାବସ୍ଥାକୁ ପସନ୍ଦ କରୁଛନ୍ତି । ଆଜି ୟୁରୋପର ଅଧିକାଂଶ ଲୋକେ ଯୁକ୍ତି ବା ଧର୍ମସମ୍ମତ ଗୋଟାଏ ସାମାଜିକ ସଂସ୍ଥା ପାଇବାକୁ ବ୍ୟଗ୍ର । କାରଣ, ଏହାଦ୍ୱାରା ସେମାନଙ୍କର ବିଶ୍ୱାସ, ପ୍ରତି ଲୋକ ନିଜର ସ୍ଥାନ ଓ ଆୟୁ ବିଷୟରେ ନିଶ୍ଚିତ ହେବା ସଙ୍ଗେ ସଙ୍ଗେ ସମାଜକୁ କଳହ ଓ ବିଭ୍ରାଟରୁ ରକ୍ଷା କରିହୋଇପାରିବ ।

ନିକଟରେ ୟୁରୋପରେ ଯୋଡ଼ିଏ ଆନ୍ଦୋଳନର ଆରମ୍ଭ ହୋଇଥିଲା । ଗୋଟିଏ ଜର୍ମାନୀରେ ହିଟଲରର ଆନ୍ଦୋଳନ ଓ ଅନ୍ୟଟି ରୁଷିଆରେ କମ୍ୟୁନିଷ୍ଟ ଆନ୍ଦୋଳନ । ସାଧାରଣ ଦୃଷ୍ଟିରୁ ଏ ଉଭୟ ପରସ୍ପର ବିରୋଧୀ । ବାସ୍ତବରେ ମଧ୍ୟ ଏ ଉଭୟଙ୍କ ମଧ୍ୟରେ ବିରୋଧ ରହିଛି । କିନ୍ତୁ ଯାହା ମନେହୁଏ, ଏ ଉଭୟ ଆନ୍ଦୋଳନ ସମାଜ ଭିତରର ଶ୍ରେଣୀ ଓ ଜାତି ସଂଗଠନରୁ ଜନ୍ମ । ଜର୍ମାନୀରେ ଯେତେବେଳେ ଶ୍ରେଣୀ-ସଂଘର୍ଷ ପ୍ରବଳ ହେଲା, ଧର୍ମଘଟ ବଢ଼ିଲା, ସୈନିକ, ଛାତ୍ର, ଶ୍ରମିକ, କୃଷକ, ଶିଳ୍ପୀ ଓ ବିଭିନ୍ନ ବ୍ୟବସାୟୀ ମଧ୍ୟରେ ସଂପର୍କ ଜଟିଳ ହେଲା, ଯେତେବେଳେ ଦେଶର ସରକାର ଅର୍ଥନୀତିକୁ ଠିକ୍ ବାଟରେ ରଖିବା ଅସମ୍ଭବ ହେଲା । ଜାତୀୟ ସାମ୍ୟବାଦୀ ଆନ୍ଦୋଳନ ଏକ ପ୍ରକାର ଜାତି ନିୟନ୍ତ୍ରଣରେ ଏ ସବୁର ସମାଧାନର ଉଦ୍ୟମ କଲା, ଏକ ନିର୍ଦ୍ଦିଷ୍ଟ ଜାତି-ଗଠନର ପରିସରରେ ଏକ ନୂଆ ଓ ବୁଦ୍ଧିଦୀପ୍ତ ଯୋଜନା ଅନୁଯାୟୀ ବିଭିନ୍ନ ଶ୍ରେଣୀମାନେ ନିୟନ୍ତ୍ରିତ ହେଲେ ।

ଏହି ଯୋଜନାର ମୂଳକଥା ହେଲା, ଏହା ଅନ୍ତତଃ ବାହାରକୁ ଖୁବ୍ ବୁଦ୍ଧିଦୀପ୍ତ ବୋଲି ମନେ ହେବ ଓ ପ୍ରାଧାନ୍ୟ ଲାଭପାଇଁ ସଂଘର୍ଷରେ ଲିପ୍ତଥିବା ଶ୍ରେଣୀମାନେ ଏହାକୁ ନିଶ୍ଚିତ ବୌଦ୍ଧିକ ସମାଧାନ ଭାବରେ ଗ୍ରହଣ କରି ସଂଘର୍ଷରୁ କ୍ଷାନ୍ତ ହେବେ । ଏହି ସଂଘର୍ଷ ଯେତେବେଳେ ଚୂଡ଼ାନ୍ତ ହେଲା ଓ ଜର୍ମାନୀ ସମାଜ ପ୍ରାୟ ଭାଙ୍ଗିଯିବା ଉପରକୁ ଆସିଗଲା, ସେତେବେଳେ ଏହି ଜାତୀୟ ସାମ୍ୟବାଦୀ ଆନ୍ଦୋଳନ ବିଭିନ୍ନ ଶ୍ରେଣୀକୁ ନିର୍ଦ୍ଦିଷ୍ଟ ଆୟୁ ଓ ସାମାଜିକ ସ୍ଥାନ ଦେଇ ଏକ ପ୍ରକାର

ଜାତିପ୍ରଥାର ସ୍ଥିତାବସ୍ଥା ଆଣି ଦେଲା । ଏହି ଆୟୋଜନରୁ ଆପାତତଃ ମନେହେବ, ଯେପରି ଏ ଯୋଜନାବଦ୍ଧ ନିୟନ୍ତ୍ରିତ-ଜୀବନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିଛି ଓ ଏଥିରୁ ଜୀବନର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଉଦ୍ଭୂତ, ଯଦିଚ ଏହା ଜାତିପ୍ରୀତିରେ ସଙ୍କୁଚିତ ଓ ଏହା ପଛରେ କୌଣସି ଚିରସ୍ଥାୟୀ ବା ଧର୍ମସମ୍ମତ ଭିତ୍ତି ନାହିଁ । ମୁଖ୍ୟତଃ ଏହା ଗୋଟିଏ ଜାତି-ଆନ୍ଦୋଳନ । ୟୁରୋପୀୟ ସଭ୍ୟତାର ଜଟିଳତାରେ ଜାତିପ୍ରଥା ଏହିପରି ବଢ଼ି ଉଠିଛି । ଭିତରେ ପ୍ରଗତିବାଦୀ; କିନ୍ତୁ ବାହାରେ ସାମ୍ରାଜ୍ୟବାଦୀ । ଜର୍ମାନୀରେ ଶ୍ରେଣୀ-ସଂଘର୍ଷକୁ ଜାତିପ୍ରଥା ସହ ସଂଯୁକ୍ତ କରି ଯେଉଁ ସଫଳତା ପାଇବାକୁ ଚେଷ୍ଟା ହେଉଥିଲା, ତାହା ବ୍ୟର୍ଥ ହେଲା ।

ରୁଷିଆର ଉଦ୍ୟମ ଯେ ମୁଖ୍ୟତଃ ସେହି ଜାତିପ୍ରଥାମୂଳକ, ଏ କଥା କମ୍ୟୁନିଷ୍ଟ ମତରେ ଉପରଠାଉରିଆ ଭାବରେ ବିଶ୍ୱାସ କରୁଥିବା ଲୋକମାନେ ହୁଏ ତ ସହଜରେ ଗ୍ରହଣ କରିବେ ନାହିଁ । ସେମାନେ ହୁଏ ତ ଭାବିବେ ଯେ, ଶ୍ରେଣୀର ବିଲୋପପାଇଁ ଏହା ଏକ ଉଦ୍ୟମ । ରୁଷିଆର ବିଭିନ୍ନ ତଥ୍ୟକୁ କିପରି ଭାବରେ ବିଶ୍ଳେଷଣ କରା-ଯାଉଛି, ତାହା ଉପରେ ଏହି ମତାମତ ନିର୍ଭର କରେ । ଜର୍ମାନୀର ଜାତୀୟ ସାମ୍ୟବାଦୀ ହୁଏତ କହିପାରେ ଯେ, ସମାଜରେ ସମବାୟ ଓ ସାମ୍ୟବାଦ-ମୂଳକ ମିଶ୍ରଣର ସେ ଯେଉଁ ଉଦ୍ୟମ କଲା, ତାର ଉଦ୍ଦେଶ୍ୟ ହେଲା ଶ୍ରେଣୀର ବିନାଶସାଧନ । ଶିଳ୍ପପତିମାନଙ୍କର ସ୍ଥିର ଆୟ ନ ଥିଲା; କିନ୍ତୁ ସେମାନେ ତାଙ୍କ ଲାଭର ଶତକଡ଼ା ୫ ବା ୬ ଭାଗରୁ ବେଶି ନେଇପାରୁ ନ ଥିଲେ । ସେମାନଙ୍କର କ୍ଷମତା ଓ ଆଭିଜାତ୍ୟ ଯଥେଷ୍ଟ ସଂକୁଚିତ କରାଯାଇଥିଲା । ତେଣୁ ନିଜର ଅନୁଷ୍ଠାନ ସଂପର୍କରେ ଯଦି ଲୋକମାନଙ୍କର ମତ ନିଆଯାଏ, ତାହାହେଲେ କମ୍ୟୁନିଷ୍ଟ ମତବାଦରେ ବିଶ୍ୱାସୀମାନେ ରୁଷିଆର କମ୍ୟୁନିଷ୍ଟ ଧାରା ଯେ ଶ୍ରେଣୀ ବିଲୋପର ଭିତ୍ତି ଉପରେ ପ୍ରତିଷ୍ଠିତ, ଏହା ନିଶ୍ଚୟ କହିବେ ; କିନ୍ତୁ ମଣିଷ ଜାତିର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ, ଯେତେବେଳେ ସମାଜରେ ଶ୍ରେଣୀ-ସଂଘର୍ଷ ତୃଢ଼ାନ୍ତ ହୋଇଛି, ସେତେବେଳେ ଜାତିପ୍ରଥାର ନିୟନ୍ତ୍ରଣରେ ଏହି ସଂଘର୍ଷକୁ ସଂଯତ କରାଯାଇଛି ଓ ଜାତିପ୍ରଥାର ବିଭିନ୍ନ ପର୍ଯ୍ୟାୟ ସ୍ୱୀକୃତ ହୋଇଛି । ଭାରତର ପ୍ରାଚୀନ ଜାତି-ମିଶ୍ରଣରେ ସର୍ବୋଚ୍ଚ ଜାତି

ବୋଧହୁଏ ସବୁଠାରୁ କମ୍ ରୋଜଗାର କରୁଥିଲ ବା ଅନ୍ତତଃ ଠିକ୍ ତା ତଳେ ଥିବା ଜାତିମାନଙ୍କଠାରୁ କମ୍ ପାଉଥିଲ । ତେଣୁ ମଣିଷର ଇତିହାସରେ ସର୍ବୋଚ୍ଚ ଜାତି ସବୁ ସମୟରେ ସବୁଠାରୁ ଧନୀ ଜାତି ନୁହେଁ ଓ ବିଭିନ୍ନ ସମୟରେ ଏହିସବୁ ପର୍ଯ୍ୟାୟ ସ୍ୱୀକୃତ ହୋଇଛି ।

ସମାଜରେ ସ୍ଥାନ ଓ ଆୟ ଉଭୟ ଆନୁପାତିକ ନୁହନ୍ତି । ଯାହାର ଯାହା ଦରକାର, ସେ ତା ପାଇବ ଓ ଯାହା ଦେବାର କ୍ଷମତା ଅଛି ସେ ଦେବ, ଏ କେବଳ କମ୍ୟୁନିଷ୍ଟ ପ୍ରବୃତ୍ତି ନୁହେଁ । ପୁରାତନ ଭାରତର ବହୁ ମୁନି ଋଷି ଏ କଥା କହିଛନ୍ତି ଓ ସେ ଦୃଷ୍ଟିରୁ ମାର୍କସ୍ ଜଣେ ଆଧୁନିକ ଋଷି ମାତ୍ର । ଏହି ନିୟମ ଭାରତୀୟ ଜାତିପ୍ରଥାରେ କେବେ କାର୍ଯ୍ୟକାରୀ ହୋଇଥିଲ କି ନାହିଁ ତା କହିବା ମୋ ପକ୍ଷରେ ସହଜ ନୁହେଁ । କମ୍ୟୁନିଷ୍ଟ ପ୍ରଥାରେ ସେମାନେ ଏହାକୁ କାର୍ଯ୍ୟକାରୀ କରିବାକୁ ଇଚ୍ଛୁକ, କିନ୍ତୁ ବର୍ତ୍ତମାନ ସେମାନେ ଅନ୍ୟ ଏକ ଆଦର୍ଶ ଗ୍ରହଣ କରିଛନ୍ତି । ସେ ହେଉଛି, ଯେ ଯେତିକି ପରିଶ୍ରମ କରିବ, ସେତିକି ପାଇବ । ନିୟମ ବା ଆଦର୍ଶ ଯାହା ହେଉନା କାହିଁକି ଏ କଥା ସତ ଯେ, ଋଷିଆରେ ବିଭିନ୍ନ ଗୋଷ୍ଠୀର ଶ୍ରମିକମାନଙ୍କର ସମାଜରେ ବିଭିନ୍ନ ସ୍ଥାନ ଓ ଆୟ ରହିଛି ଏବଂ ଏହି ସ୍ୱୀକୃତ ସ୍ଥାନ ଓ ଆୟର ପରିବର୍ତ୍ତନ ପାଇଁ ସଂଘର୍ଷ କରିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ସେମାନଙ୍କ ପାଇଁ ଯାହା କିଛି ପରିବର୍ତ୍ତନ ସେ କେବଳ ଉପରୁ ନେତାମାନଙ୍କଦ୍ୱାରା ହେବ । ତା ଛଡ଼ା ନିର୍ଦ୍ଦିଷ୍ଟ ସମୟ ପରେ ଏପରି ପରିବର୍ତ୍ତନ ଆପେଆପେ ହେବ ନାହିଁ । କେବଳ ସମଗ୍ରଭାବରେ ଦେଶର ଆୟ ବଢ଼ିଲେ ବା ସମାଜରେ ବିଭ୍ରାଟ ଉପୁଜିବାର ସମ୍ଭାବନା ନ ଥିଲେ, ଏପରି ପରିବର୍ତ୍ତନ ସମ୍ଭବ ।

ତେଣୁ କମ୍ୟୁନିଷ୍ଟ ଧାରାରେ ହୁଏତ ଶ୍ରେଣୀ-ସଂଘର୍ଷର ବିଲୋପ ଘଟିଛି; କିନ୍ତୁ ଶ୍ରେଣୀର ବିଲୋପ ଘଟିନାହିଁ ଏବଂ ସମାଜରେ ନିର୍ଦ୍ଦିଷ୍ଟ ସ୍ଥାନ ଓ ଆୟବିଶିଷ୍ଟ ନୂତନ ଜାତିର ସୃଷ୍ଟି ହୋଇଛି । ତେଣୁ ଆଜି ଯଦି ପୀଡ଼ିତ ଓ ଅତ୍ୟାଚରିତ ୟୁରୋପୀୟ ଆତ୍ମା ନିଜର ଆଭ୍ୟନ୍ତରୀଣ ଅରାଜକତା ଓ ବିଚ୍ଛିନ୍ନତାରୁ ଉଦ୍ଧାର ପାଇବା ପାଇଁ ଜାତିପ୍ରଥାର ସାମଞ୍ଜସ୍ୟ ଓ ନିୟନ୍ତ୍ରଣ ଖୋଜୁଥାଏ ଓ ହିଟଲର ଏବଂ କମ୍ୟୁନିଷ୍ଟ ଆନ୍ଦୋଳନ ଏହି ଇଚ୍ଛାର ପ୍ରତିରୂପ ହୋଇଥାଏ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ

ଏହା ଅନ୍ୟମାନଙ୍କ ପ୍ରତି ଏକ ସତର୍କବାଣୀ । ଶ୍ରେଣୀ ବିଲୋପ କରିବାର ଅତିରିକ୍ତ ଆଗ୍ରହରେ ନୂତନ ଜାତିର ସୃଷ୍ଟି ନ ହେଉ, ଏହା ହିଁ କାମ୍ୟ ।

କିନ୍ତୁ ଜାତି ସଂପର୍କରେ ଋଷିଆର ଉଦ୍ୟମ ଜର୍ମାନୀର ଉଦ୍ୟମଠାରୁ ଭିନ୍ନ । ଜର୍ମାନୀର ଅତି ଉନ୍ନତ ଅର୍ଥନୀତିକୁ ଶ୍ରେଣୀ-ସଂଘର୍ଷରୁ ରକ୍ଷା କରିବା ପାଇଁ ସେଠାରେ ଜାତିର ସୃଷ୍ଟି ହେଲା । ତା ଛଡା ବାହାରୁ ଜୀବନଶକ୍ତି ପାଇବାପାଇଁ ହୁଏତ ଜର୍ମାନୀର ଅର୍ଥନୀତି ପକ୍ଷରେ ଏହିପରି ଏକ ସାହାଯ୍ୟର ଆବଶ୍ୟକତା ଥିଲା । କିନ୍ତୁ ଋଷିଆରେ ବୋଧହୁଏ କୃଷି-ଅର୍ଥନୀତିରୁ ଏକ ବିଶେଷଜ୍ଞ ଉନ୍ନତ ଶିଳ୍ପ-ଅର୍ଥନୀତି ସୃଷ୍ଟିର ଆବଶ୍ୟକତା ଯୋଗୁଁ ଜାତିର ଆରମ୍ଭ ହେଲା । ଅନ୍ୟଥା ପ୍ରବଳ ଶ୍ରେଣୀ-ସଂଘର୍ଷର ପରିବେଶରେ ଏହା ହୁଏତ ସମ୍ଭବ ହୋଇ ନ ଥାନ୍ତା । ଏହା ସହିତ ଏ କଥା ସ୍ମରଣ ରଖିବାକୁ ହେବ ଯେ, ଋଷିଆର ବିସ୍ତୃତ ଜମି ଓ ପ୍ରଚୁର ଉତ୍ପାଦନର ସମ୍ଭାବନା ଦୃଷ୍ଟିରୁ ଲୋକସଂଖ୍ୟାର ଘନତା ଜର୍ମାନୀ ତୁଳନାରେ ଯଥେଷ୍ଟ କମ୍ । ତେଣୁ ସେଠାରେ ନୂତନ ସୃଷ୍ଟିର ସମ୍ଭାବନା ଯଥେଷ୍ଟ ଉଜ୍ଜ୍ୱଳ ।

ରକ୍ଷାମୂଳକ ଓ ସୃଷ୍ଟିମୂଳକ ଜାତିର ପ୍ରଭେଦକୁ ମନରେ ରଖି ଋଷିଆ ପୁଣି ଭବିଷ୍ୟତରେ ବିଭିନ୍ନ ଶ୍ରେଣୀରେ ବିଭକ୍ତ ହେବ କି ନାହିଁ ତାହା କହିବା ଆଜି ସମ୍ଭବ ନୁହେଁ । ଏପରି କି ଋଷିଆର ଅର୍ଥନୀତି ସଫଳତାର ସହିତ ବୃଦ୍ଧିଲାଭ କରିବ ଓ ବାହାର ଶକ୍ତିମାନଙ୍କର ଗ୍ରାସ ବଢ଼ିବ ନାହିଁ, ଏହା ଧରିନେଲେ ବି ଏ କଥା କହିବା ସହଜ ନୁହେଁ । ପୁଣି କମ୍ୟୁନିଷ୍ଟ ଋଷିଆରେ ଜାତିପ୍ରଥାର ବିଭିନ୍ନ ଦୁର୍ଗୁଣ ସହିତ ଏକ ପ୍ରକାର ହରିଜନ-ମନୋଭାବ ପ୍ରବେଶ କଲାଣି । ଭାରତରେ ହରିଜନମାନେ ପ୍ରାୟ ଶତକଡା ୨୦ ଓ ଋଷିଆର ବିଭିନ୍ନ ସଂସ୍କାରମୂଳକ ଶିବିରମାନଙ୍କରେ ଏମାନଙ୍କର ସଂଖ୍ୟା ଶତକଡ଼ା ୫ ରୁ ୧୦ । କିନ୍ତୁ ଭାରତରେ ଯେପରି ବିଦେଶୀ ବ୍ୟକ୍ତି ଓ ବିଦେଶୀ ପ୍ରଭାବଯୋଗୁ ସମାଜରେ ହରିଜନ-ମନୋଭାବ ବୃଦ୍ଧି ପାଇଲା ତା ନୁହେଁ । କାରଣ ଯାହାହେଉ, ଏହାଦ୍ୱାରା ମଣିଷର ଶ୍ରମକୁ ନିଷ୍ଠୁର ଭାବରେ ଓ ଅତି ଶସ୍ତାରେ ଅର୍ଥନୀତିର ପୁନର୍ଗଠନପାଇଁ ବ୍ୟବହାର କରାଯାଉଛି । କିନ୍ତୁ ଋଷିଆର ପ୍ରଥା ଯେ ଭାରତଠାରୁ ଅଧିକ ନିଷ୍ଠୁର, ତା ନୁହେଁ । ଭାରତରେ

ସମସ୍ତଙ୍କମେ ଓ ଧର୍ମମୂଳକ ଆଗ୍ରହର ବ୍ୟବହାରର ପ୍ରଭାବହେତୁ ଏହାର ମୂଳଆ ଦାନ୍ତ ଏବୁ ଭାଙ୍ଗିଗଲାଣି । ଏପରିକ ଯେଉଁମାନେ ଜାତି ପ୍ରଥାର ନିର୍ଦ୍ଦୟତାରେ ଅତ୍ୟାଚାରିତ ଓ ପୀଡ଼ିତ, ସେମାନେ ବି ଏହାକୁ ଗ୍ରହଣ କରି ଗଲେଣି ଓ ଏହି ନିଷ୍ଠୁରତା ବାହାରକୁ ଜଣା ନ ଗଲେ ବି ଏହାର ପ୍ରଚଣ୍ଡ କ୍ଷୟକାରୀ ଶକ୍ତି ଭିତରେ ଭିତରେ ପରିବ୍ୟାପ୍ତ ।

ଶ୍ରେଣୀ ଶେଷକୁ କିପରି ଜାତିର କଠିନ ଆବରଣରେ ଆବଦ୍ଧ ହୋଇଯାଏ, ସେ କଥା ଭାରତୀୟମାନେ ଭଲଭାବରେ ଜାଣିବା ଉଚିତ । ବିଭିନ୍ନ ସମୟରେ ଏକଥା ଦେଖାଯାଇଛି ଓ ବର୍ତ୍ତମାନ ୟୁରୋପରେ ଏହା ଘଟିଛି । ୟୁରୋପୀୟ ମନ ଅନ୍ୟ ଏକ ଜାତିପ୍ରଥା ଉଦ୍ଭାବନ କରିବ କି ନାହିଁ, ସେ ଅନ୍ୟ ପ୍ରଶ୍ନ । ହୁଏତ ସେଥିପାଇଁ ଚେଷ୍ଟା ସଫଳ ନ ହୋଇପାରେ । ଯେଉଁ ସଭ୍ୟତାରେ ଆଜ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଶିଳ୍ପ-ବିପ୍ଳବ ଚାଲିଆସିଛି, ସେଠାରେ ଲୋକମାନଙ୍କୁ ଏକ ସ୍ଥିର ସାମାଜିକ ବିଭାଗରେ ଅଭ୍ୟସ୍ତ କରେଇବା ସହଜ ନୁହେଁ । ଏପରି କି ଭବିଷ୍ୟତରେ ଯଦି ଦକ୍ଷତା ହ୍ରାସ ବା ଶିଳ୍ପ ବିପ୍ଳବର ଚୂଡ଼ାନ୍ତ ଅବସ୍ଥା ହେତୁ ୟୁରୋପୀୟ ସମାଜରେ ଜାତିପ୍ରଥା ଆରମ୍ଭ ହୁଏ, ତେବେ ବି ସାମ୍ୟ ଓ ନ୍ୟାୟ ପାଇଁ ସଂଘର୍ଷର ଦୀର୍ଘ ଐତିହ୍ୟ ଏହି ଜାତିପ୍ରଥାକୁ ବାଧା ଦେବ । କିନ୍ତୁ ଯୁଦ୍ଧ କରିବାର ଶକ୍ତି ହ୍ରାସ ହେବା ସଙ୍ଗେ ସଙ୍ଗେ ସମାଜ ହୁଏତ ଜାତି ପ୍ରଥାର ସମାଧାନ ଖୋଜିବ ବା ଶ୍ରେଣୀ-ସଂଘର୍ଷ ଆହୁରି ପ୍ରବଳତର ହେବ । ଫଳରେ ୟୁରୋପୀୟ ସଭ୍ୟତା ହୁଏତ ପଛରେ ପଡ଼ିଯିବ ବା ବିପର୍ଯ୍ୟସ୍ତ ହୋଇ ନଷ୍ଟ ହେବ ବା ଅନ୍ୟ କୌଣସି ଅଧିକତର ଶକ୍ତିଶାଳୀ ସଭ୍ୟତାଦ୍ୱାରା ଆଚ୍ଛନ୍ନ ହୋଇପଡ଼ିବ । ଭିତରର ସଂଘର୍ଷ ପ୍ରବଳ ହେଲେ ଜାତିପ୍ରଥାର ଆରମ୍ଭ ହୁଏ, ଏକଥା ଆଗରୁ କୁହାଯାଇଛି; କିନ୍ତୁ ତା ସହିତ ଏକଥା ବି ପୁଣି ଥରେ ମନେ ରଖିବାକୁ ହେବ ଯେ, ଜାତିର ପ୍ରତିଷ୍ଠା ଶ୍ରେଣୀର ବିଲୋପ ସାଧନ ନୁହେଁ ।

ମୁଁ ଅନ୍ୟମାନଙ୍କ ପରି ଶ୍ରେଣୀର ବିଲୋପ ପାଇଁ ସମାନ ଆଗ୍ରହାନ୍ୱିତ । କିନ୍ତୁ ମୋର ଆଶଙ୍କା, ବାରମ୍ବାର ଶ୍ରେଣୀ ବିଲୋପର ଆଳରେ କେବଳ ନୂତନ ନୂତନ ଜାତିର ସୃଷ୍ଟି ହୋଇଛି । ଆଜ ପର୍ଯ୍ୟନ୍ତ

ମଣିଷ ଜାତିର ଇତିହାସ ଜାତିରୁ ଶ୍ରେଣୀ ବା ଶ୍ରେଣୀରୁ ଜାତିକୁ ଆନ୍ଦୋଳନ-ଶ୍ରେଣୀ ଜାତିର କଠିନତାରେ ଆବଦ୍ଧ କରିଛୁ ଓ ଜାତି ଶ୍ରେଣୀରେ ନିଷ୍ଠିତ ହୋଇଯାଇଛୁ ।

ଯେଉଁମାନେ ଜାତି ଓ ଶ୍ରେଣୀ ଉଭୟକୁ ଲୋପ କରିବାକୁ ଚାହାନ୍ତି, ସେମାନେ ମଣିଷ ସମାଜ ଓ ଇତିହାସରେ ଉଭୟର ଜଟିଳ ସମ୍ପର୍କ ବୁଝିବା ଉଚିତ୍ । ତା'ହେଲେ ଉଭୟକୁ ବିନାଶ କରିବା ପାଇଁ ସୂତ୍ରର ସନ୍ଧାନ ମିଳିପାରେ । ଇତିହାସ ସ୍ୱତଃ ତାହା କରିବନାହିଁ । ଯାଏଦିନ ଧରି ଜାତିପ୍ରଥାର ପ୍ରାଧାନ୍ୟ ହେତୁ ଭାରତୀୟ ସମାଜ ଏକ ସ୍ଥାଣୁ ଓ ନିର୍ବେଦ ଅବସ୍ଥାରେ ରହିଛି । ବର୍ତ୍ତମାନ ଦେଶରେ ନୂତନ ଶକ୍ତିର ସଞ୍ଚାର ହେତୁ ଜାତି ଶ୍ରେଣୀରେ ରୂପାନ୍ତରିତ ହେଉଛି ଓ ସମାଜ ଭିତରେ ଅସମାନତା ଦୂର କରିବାପାଇଁ ସଂଘର୍ଷ ଆରମ୍ଭ ହେଲାଣି । କୌଣସି ୟୁରୋପୀୟ ଚିନ୍ତାଧାରାକୁ ବିଶ୍ୱସ୍ତ ଭାବରେ ଅନୁସରଣ କରିବାଦ୍ୱାରା ଭାରତୀୟ ସମାଜର ଏହି ନୂତନ ଆନ୍ଦୋଳନ ବ୍ୟାହତ ହେବ କି ନାହିଁ ବର୍ତ୍ତମାନ କହିବା ସହଜ ନୁହେଁ । ତେବେ ୟୁରୋପୀୟ ପୁଞ୍ଜିବାଦୀ ବା କମ୍ୟୁନିଷ୍ଟ ମତବାଦକୁ ତାର ଉତ୍ପତ୍ତି, ଗୁଣ ବା ପରିବେଶ ପ୍ରଭୃତିର ବିନାବିଚାରରେ ଗ୍ରହଣ କରିନେଲେ ଭାରତର ନୂତନ ଶକ୍ତି ନିଶ୍ଚୟ ବାଧା ପାଇବ । ଏପରି ଏକ ଜାତି-ଗଠନର ଦ୍ୱିଏତ ଉଦ୍ଭବ ହୋଇପାରେ, ଯେଉଁଥିରେ କି ରାଜନୈତିକ ଦଳ, ପରିଚାଳକଗୋଷ୍ଠୀ ଓ ବିଶେଷଜ୍ଞ ଶ୍ରେଣୀ ସମସ୍ତେ ଉଚ୍ଚ ଶ୍ରେଣୀ ଭାବରେ ଚିହ୍ନିତ ହେବେ ଓ ଦେଶର ଅନ୍ୟାନ୍ୟ ଅଗଣିତ ଜନତା ନୀଚ ଜାତି ଭାବରେ ବିଭିନ୍ନ ଦଳରେ ବିଭକ୍ତ ହୋଇ ରହିବେ ।





# ୟୁରୋପୀୟ ସମସ୍ୟା

ସମାଜ ଭିତରେ ଘଟୁଥିବା ଜାତି ଓ ଶ୍ରେଣୀ ଆନ୍ଦୋଳନ ସମାଜ ବା ସଭ୍ୟତା-ବାହାରର ଘଟଣାବଳୀ ସହିତ ସଂପୃକ୍ତ । କାରଣ ଶ୍ରେଣୀ-ସଂଘର୍ଷ ସହିତ ବିଭିନ୍ନ ଜାତି ଜାତି ମଧ୍ୟରେ ସଂଘର୍ଷ ସବୁ ସମୟରେ ଲଗି ରହିଛି । ସମୃଦ୍ଧି ଓ ଶକ୍ତି ଯୁଗରୁ ଯୁଗ ସ୍ଥାନ ପରିବର୍ତ୍ତନ କରିଛି ଓ କୌଣସି ଗୋଟିଏ ଜାତି ସବୁଦିନପାଇଁ ଗୌରବର ଶିଖର ଦେଶରେ ରହିନାହିଁ । ଭାରତ ଏକ ସମୟରେ ଇତିହାସରେ ସର୍ବୋତ୍ତମ ଗୌରବ ଲାଭ କରିଥିଲା କିନ୍ତୁ ପ୍ରାୟ ଗତ ୨୦୦ ବର୍ଷରୁ ବେଶି ହେବ ତାହାର କୌଣସି ଗୌରବ ନାହିଁ । ଗତ ୩୦୦ ବର୍ଷ ଧରି ୟୁରୋପର ଲୋକମାନେ ସଭ୍ୟତାର ଚୂଡ଼ାରେ ପ୍ରତିଷ୍ଠିତ । ବାସ୍ତବିକ ବାହାରୁ ଦେଖିବାକୁ ଗଲେ ମଣିଷର ଇତିହାସ ହେଉଛି ଗୋଟିଏ ଅଞ୍ଚଳରୁ ଆଉ ଗୋଟିଏ ଅଞ୍ଚଳକୁ ଶକ୍ତି ଓ ସମୃଦ୍ଧିର ସ୍ଥାନ ପରିବର୍ତ୍ତନର ଇତିହାସ । କେବଳ ଭାରତ ବା ୟୁରୋପ ନୁହେଁ, ବିଭିନ୍ନ ସମୟରେ ଗ୍ରୀସ୍, ରୋମ୍, ଚୀନ୍, ଆରବ ଏପରି କି ମେକ୍ସିକୋ ଇତିହାସର ସର୍ବୋତ୍ତମ ଗୌରବ ଲାଭ କରିଥିଲେ । ତେଣୁ ଉତ୍‌ଥାନ ଓ ପତନ ସବୁ ସାମାଜିକ ଗୋଷ୍ଠୀ ଓ ସଭ୍ୟତାରେ ଅବଶ୍ୟମ୍ଭାବୀ ।

ତେଣୁ ଇତିହାସ କହିଲେ ଭିତରର ଶ୍ରେଣୀ ଓ ଜାତି ଆନ୍ଦୋଳନ ସହିତ ବାହାରର ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଶକ୍ତି ଓ ସମୃଦ୍ଧିର ପରିବର୍ତ୍ତନ, ଏ ଉଭୟ ବୁଝିବାକୁ ହେବ । ଏ ଉଭୟ ପରସ୍ପର ସହିତ ସଂପୃକ୍ତ । ଯେତେବେଳେ କୌଣସି ଐତିହାସିକ

ଗୋଷ୍ଠୀ ଶକ୍ତିଶାଳୀ ଓ ସମୃଦ୍ଧିବନ୍ତ ହୋଇ ଗୌରବ ଓ ସଫଳତା ଲାଭକରେ, ସେତେବେଳେ ସମାଜ ଭିତରେ ଜାତିପ୍ରଥା କୋହଳ ହେବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ସାମ୍ୟତା ଆସେ ଓ ଶ୍ରେଣୀ-ସଂଘର୍ଷ ସୀମାଭିତରେ ସଂକୁଚିତ ହୋଇ ରହେ । ପ୍ରତ୍ୟେକ ଶ୍ରେଣୀ ଅଧିକରୁ ଅଧିକ ଉନ୍ନତି କରିବାକୁ ଚେଷ୍ଟା କରେ ଓ ଏହି ଉଦ୍ୟମ ଫଳରେ ସମାଜରେ ବିଭିନ୍ନ ଶ୍ରେଣୀ ଉନ୍ନତରୁ ଉନ୍ନତତର ହୋଇ ମଣିଷ ମଣିଷ-ଭିତରେ ସମାନତା ଆଣେ । କିନ୍ତୁ ସମଗ୍ରଭାବରେ ସମାଜର ଅବନତି ହେଲେ ଶ୍ରେଣୀ-ସଂଘର୍ଷ ପ୍ରବଳ ହୁଏ ଓ ଗୃହପାଖର ବଡ଼ୁଆଁଠାରୁ ସେତେବେଳେ ଏକ ନ୍ୟାୟସମ୍ମତ ନିୟନ୍ତ୍ରଣ ଅଧିକତର କାମ୍ୟ ବୋଲି ମନେହୁଏ । ଏହି ଜାତି ନିୟନ୍ତ୍ରଣ ନ୍ୟାୟସମ୍ମତ ହେଉ କି ନ ହେଉ, କ୍ରମଶଃ ସମାଜରେ ଅବନତି ବୃଦ୍ଧି ପାଏ ଓ ସ୍ଥାଣୁତ୍ୱ ଆସିଯାଏ । ଅର୍ଥାତ୍ ବାହାରେ ଶକ୍ତି ଓ ସମୃଦ୍ଧି ସଙ୍ଗେ ସଙ୍ଗେ ଭିତରର ବୈଷମ୍ୟ କମେ ଓ ବାହାରର ସମୃଦ୍ଧି ଅପଚୟ ହେବା ସଙ୍ଗେ ସଙ୍ଗେ ଭିତରର ବୈଷମ୍ୟ ବୃଦ୍ଧି ପାଏ ଓ ଜାତିପ୍ରଥାର ନିୟନ୍ତ୍ରଣ ଆରମ୍ଭ ହୁଏ ।

ଯେ କୌଣସି ସମୟରେ ସମଗ୍ର ଐତିହାସିକ ପରିସ୍ଥିତିରେ ଭିତରର ଜାତି ଓ ଶ୍ରେଣୀ-ସଂଘର୍ଷ ସହିତ ବାହାର ଶକ୍ତିର କ୍ଷୟ ବା ବୃଦ୍ଧି ମିଶିକରି ରହିଛି । ଯେ କୌଣସି ସମାଜକୁ ବାହାରୁ ଦେଖିଲେ, ସେହି ସମାଜର ଅନ୍ୟ ସମାଜ ବା ସଭ୍ୟତା ସହିତ ଏକ ସବୁଦିନିଆ ସଂପର୍କ ଆଖିରେ ପଡ଼େ ଓ ଏହି ନିର୍ଦ୍ଦିଷ୍ଟ ସଂପର୍କ ସେହି ସମାଜ ପକ୍ଷରେ ଅନେକ ସମୟରେ ହୁଏ ନାହିଁ । କିନ୍ତୁ ସେହି ସମାଜକୁ ଭିତର ଆଡ଼ୁ ଦେଖିଲେ ମନେହେବ, ସତେ ଯେପରି ସାରା ସମାଜ ସବୁବେଳେ ଜାତି ଓ ଶ୍ରେଣୀ ଗୃହପାଖରେ ଘୂରି ବୁଲୁଛି । ସମାଜର ଏହି ବାହ୍ୟ ଓ ଆଭ୍ୟନ୍ତରୀଣ ଦୁଇ ଗତି ମଧ୍ୟରେ ଥିବା ସଂପର୍କ ସମାଜର ଶିଳ୍ପ-ଦକ୍ଷତା ଓ ନିୟନ୍ତ୍ରଣର ସୂକ୍ଷ୍ମତା ଉପରେ ନିର୍ଭର କରେ । ଆଜି ପର୍ଯ୍ୟନ୍ତ ପ୍ରତି ସମାଜ କେତେକ ନିର୍ଦ୍ଦିଷ୍ଟ ଓ ସୀମିତ ଢଙ୍ଗରେ ଦକ୍ଷତା ହାସଲ କରିବାକୁ ଚେଷ୍ଟା କରି ଆସିଛି, ଯଦିଓ ଅନେକ ସମୟରେ ଅନେକ ସମାଜ ସମଗ୍ର ଦକ୍ଷତା ହାସଲ କରିଛନ୍ତି ବୋଲି ପ୍ରଚାର କରାଯାଇଥାଏ । ସମାଜର ଏହି ନିର୍ଦ୍ଦିଷ୍ଟ ଦକ୍ଷତା ହାସଲ ଉପରେ ସମାଜର ଆଭ୍ୟନ୍ତରୀଣ ଓ ବାହ୍ୟ ଗତିର ପ୍ରକୃତି ନିର୍ଭର

କରେ । ଯେତେବେଳେ କୌଣସି ସଭ୍ୟତା ସର୍ବୋତ୍ତମ ଦକ୍ଷତା ହାସଲ କରିବାକୁ ଆଗେଇ ଚାଲେ, ଏପରି କି ଏହି ଦକ୍ଷତା ହାସଲ କରିବାର ପରେ ପରେ ବି ବାହାର ଜଗତ ସହିତ ସଂପର୍କର ଉନ୍ନତି ଘଟେ । ଏହି ଉନ୍ନତିର ଅର୍ଥ ନୁହେଁ ଯେ, ବାହାର ସଭ୍ୟତାମାନଙ୍କରୁ ଏହା ଜୀବନଶକ୍ତି ଆହରଣ କରେ, ଯଦିଓ ଅନେକ ସମୟରେ ତାହା ଘଟିଥାଏ । ସେ ଯାହା ହେଉ, ବିଦେଶୀ ଶକ୍ତିମାନେ ଏହି ସମୟରେ ଏହି ସଭ୍ୟତାକୁ ଆକ୍ରମଣ କରିବାକୁ ସାହସ କରନ୍ତି ନାହିଁ ବା ଯଦି ସେମାନେ କରନ୍ତି, ଏହି ଆକ୍ରମଣ ସଫଳତାର ସହିତ ପ୍ରତିହତ କରାଯାଇଥାଏ; କିନ୍ତୁ ସର୍ବୋତ୍ତମ ଦକ୍ଷତା ହାସଲ କରିବାର ପରବର୍ତ୍ତୀ ଅବସ୍ଥାରେ ଏହି ସଭ୍ୟତାର ଅନ୍ୟ-ମାନଙ୍କ ସହିତ ସଂପର୍କରେ କ୍ରମଶଃ ଅବନତି ଦେଖା ଯାଇଥାଏ । ସେତେବେଳେ ଏହା ଅନ୍ୟମାନଙ୍କର ଲାଳସାର ଶିକାର ହୁଏ ଓ କେତେବେଳେ କେମିତି କାହିଁ କୌଣସି ସଭ୍ୟତା ଅନ୍ୟମାନଙ୍କଦ୍ୱାରା ବିଶେଷ ବ୍ୟତିବ୍ୟସ୍ତ ନ ହୋଇ ଚୁଇଁ ଚୁଇଁ କ୍ଷୟ ପାଇଯାଏ । କିନ୍ତୁ ଉଭୟ କ୍ଷେତ୍ରରେ ଭିତର ଓ ବାହାରର ଦାବୀ ସହିତ ତାଳ ଦେଇ ଏହି ସଭ୍ୟତା ଆଉ ଚାଲିପାରେ ନା ଓ କୌଣସି ସଭ୍ୟତା ପକ୍ଷରେ ବି ଆଜି ପର୍ଯ୍ୟନ୍ତ ଥରେ ଏକ ନିର୍ଦ୍ଦିଷ୍ଟ ଦିଗରେ ଦକ୍ଷତା ହାସଲ କଲାପରେ ଦିଗ ପରିବର୍ତ୍ତନ କରିବା ସମ୍ଭବ ହୋଇନାହିଁ । ମଣିଷର ବୁଦ୍ଧି ଆଜି ପର୍ଯ୍ୟନ୍ତ ସମଗ୍ର ଦକ୍ଷତାର ଦାବୀ ଓ ଏହି ଦକ୍ଷତାର ସବୁ ଦିଗକୁ ସଂପୂର୍ଣ୍ଣଭାବରେ ଉପଲବ୍‌ଧି କରିପାରିନାହିଁ ।

ଯେତେବେଳେ ସମାଜରେ ଦକ୍ଷତାର ବୃଦ୍ଧି ଘଟିଥାଏ, ସେତେବେଳେ ସାରା ସମାଜରେ ଏକ ଚଞ୍ଚଳଚେତନାର ବିକାଶ ହୁଏ । ସାମ୍ୟ ଓ ନ୍ୟାୟପାଇଁ ବାରମ୍ବାର ଦାବୀ ହୁଏ । ଏହି ଦାବୀ କେତେକ ପରିମାଣରେ ପୂରଣ ହୁଏ । ସଂପୂର୍ଣ୍ଣ ସାମ୍ୟତା ଆଜି ପର୍ଯ୍ୟନ୍ତ କେଉଁଠି ସମ୍ଭବ ହୋଇନାହିଁ, ଏପରି କି ସୀମିତ ପରିବେଶରେ ମଧ୍ୟ ସଂପୂର୍ଣ୍ଣ ସାମ୍ୟତା ଆସି ନାହିଁ ; କିନ୍ତୁ ଦକ୍ଷତାର ବୃଦ୍ଧି ସଙ୍ଗେ ସଙ୍ଗେ ସମାଜରେ ଶକ୍ତି ଓ ସମୃଦ୍ଧି ବଢ଼େ ଓ ଅଧିକତର ସାମ୍ୟ ଓ ସୁନ୍ଦରତର ଜୀବନ ପାଇଁ ଯେଉଁ ଦାବୀ ହୁଏ, ତାହା କେତେକ ପରିମାଣରେ ପୂରଣ ହୋଇଥାଏ । ଆୟ ତୁଳନାରେ ସମାଜରେ ସ୍ଥାନ ସବୁ ସମୟରେ ଆନୁପାତିକ ନ ହେଲେ ବି ଏକ

ସାଧାରଣ ସମୃଦ୍ଧି ସମ୍ଭବ ହୁଏ । ଏହି ସମୃଦ୍ଧି ବା ବୃଦ୍ଧି ଫଳରେ ଭିତରେ ଭିତରେ ସତେ ଯେପରି ସମତା ଆସି ଯାଇଛି, ଏହିପରି ମନେହୁଏ ଓ ବିଶେଷ କରି ଅନ୍ନ ବସ୍ତ୍ର କ୍ଷେତ୍ରରେ ବାସ୍ତବିକ ସମୃଦ୍ଧିର ସମତା ଆସେ ; କିନ୍ତୁ ଯେତେବେଳେ ଆୟ ଓ ସମାଜରେ ବିଭିନ୍ନ ଶ୍ରେଣୀର ସ୍ଥାନ ସଂପର୍କରେ ଉନ୍ନତିର ଶେଷ ପର୍ଯ୍ୟାୟ ଆସିଯାଏ ବା ସାମାଜିକ ଦକ୍ଷତାରେ ଅବନତି ଆସେ, ସେତେବେଳେ କେବଳ ନିମ୍ନତର ଶ୍ରେଣୀଦ୍ୱାରା ଉଚ୍ଚତର ଶ୍ରେଣୀ ସବୁଙ୍କ ଅନଧିକାର ଅଧିକାର କରିବା ଦ୍ୱାରା ଏହି ଦାବୀ ପୂରଣ ହେବା ସମ୍ଭବ ହୁଏ , କିନ୍ତୁ ଏପରି ଅନଧିକାର ଅଧିକାର ହୁଏ ତ କେତେକ ସୀମା ଭିତରେ ଗ୍ରହଣୀୟ ।

ଏହି ସୀମାରେ ଶୀଘ୍ର ପହଞ୍ଚିଗଲା ପରେ ତେଣିକି ଶ୍ରେଣୀ-ସଂଘର୍ଷ କେବଳ ଘୋର ବିଭ୍ରାଟ ଓ ବିପର୍ଯ୍ୟୟର ସୂଚନା ଦିଏ । ଏହି ସମୟରେ ସମାଜରେ ଶାନ୍ତି, ସଦ୍ଭାବ ଓ ଶୃଙ୍ଖଳା ଫେରେଇ ଆଣିବାକୁ ଉଦ୍ୟମ ହୁଏ ଓ ନ୍ୟାୟର ଆଦର୍ଶ ସମାଜରେ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୁଏ । ନ୍ୟାୟ ପାଇଁ ଦାବୀ ନ ହେଲେ ହୁଏ ତ ସୁଶୃଙ୍ଖଳ ଓ ନିର୍ଭରଶୀଳ ଜୀବନଯାପନ ସମ୍ଭବ ନ ହୋଇପାରେ । ଯଦି ସମାଜରେ ପ୍ରଚଳିତ ନ୍ୟାୟ ମନୋଭାବ ଫଳରେ ଏକ ବୃତ୍ତିଧାର୍ଯ୍ୟ ଜାତି ପ୍ରଥାର ଉଦ୍ଭବ ହୁଏ, ତାହାହେଲେ ପୂର୍ବର ସାମ୍ୟମୂଳକ ମନୋଭାବ ଅକାମୀ ହୋଇଗଲେ ବି ଆୟ ଓ ଆଭିଜାତ୍ୟର ସଂପର୍କ ସ୍ଥିର କରି ସଭ୍ୟତା କିଛିଦିନ ନିରୁପଦ୍ରବ ଭାବରେ ରହିପାରେ ; କିନ୍ତୁ ଏହି ନିରାପଦ-ଅବସ୍ଥିତି ମୂଳରେ ସ୍ଥାଣୁତ୍ୱର ବୀଜ ବିଦ୍ୟମାନ । କୌଣସି ନୂତନ ଦିଗରେ ଦକ୍ଷତାର ଅଭିବୃଦ୍ଧି ନ ଘଟିଲେ ବା ସୃଷ୍ଟିଶୀଳ ଶକ୍ତିର ପୁନଃ ପ୍ରକାଶ ନ ହେଲେ, ଯେ କୌଣସି ପରିସ୍ଥିତି ସଭ୍ୟତାର ଅବଶ୍ୟମ୍ଭାବୀ ପରିଣତି ହେଉଛି ଅବନତି, ବିନାଶ ଓ କ୍ଷୟ ।

ଶ୍ରେଣୀ ହେଉଛି ସମତା ଲାଭ କରିବାର ଯେଉଁ ମନୋଭାବ ତାର ପ୍ରକାଶ ଓ ନ୍ୟାୟ ପାଇଁ ଯେଉଁ ମନୋଭାବ ତାର ପ୍ରକାଶ ହେଉଛି ଜାତି । ମଣିଷ ମନରେ ସମତା ପାଇଁ ଯେଉଁ ମନୋଭାବ, ସେ ଖୁବ୍ ସ୍ୱାଭାବିକ ଓ ଶକ୍ତିଶାଳୀ, କିନ୍ତୁ ନ୍ୟାୟପାଇଁ ମନୋଭାବ ମୂଳରେ କେତେକ ପରିମାଣରେ ଚିନ୍ତା ଓ ବିଚାର ନିହିତ ।

କିନ୍ତୁ କେବଳ ଶୂନ୍ୟତାରେ ଏ ଉଭୟ ଇଚ୍ଛା କାର୍ଯ୍ୟକାରୀ ହୁଏ ନାହିଁ । ଉନ୍ନତି କରି ପରେ ଅବନତି କରୁଥିବା ସମାଜର ପରିପ୍ରେକ୍ଷିତରେ ଏ ଉଭୟ ଇଚ୍ଛା ପ୍ରକାଶ ପାଏ । ଏ ପରିପ୍ରେକ୍ଷିତରେ ସମତା କ୍ରମଶଃ ବିଭ୍ରାଟରେ ଓ ନ୍ୟାୟ ସ୍ଥାଣୁତ୍ୱରେ ପର୍ଯ୍ୟବସିତ ହୁଏ । ସମତାରୁ ଶ୍ରେଣୀ ଏବଂ ଶ୍ରେଣୀରୁ ବିଭ୍ରାଟ ଓ କ୍ଷୟ, ତା ସାଙ୍ଗେ ସାଙ୍ଗେ ନ୍ୟାୟରୁ ଜାତି ଓ ଜାତିରୁ ଆଳସ୍ୟ ଓ ସ୍ଥାଣୁତ୍ୱ, ପରିଶେଷରେ ସାମ୍ୟକୁ ପ୍ରତ୍ୟାବର୍ତ୍ତନ—ଏହା ହିଁ ଯେକୌଣସି ସଭ୍ୟତାରେ ମଣିଷ ଭାଗ୍ୟର ପୂର୍ଣ୍ଣ ଚକ୍ର । ମଣିଷର ଭାଗ୍ୟ ସାମ୍ୟ ଓ ନ୍ୟାୟ, ଶକ୍ତି ଓ ନିଶ୍ଚିନ୍ତତା ମଧ୍ୟରେ ଆନ୍ଦୋଳିତ ହେଉଛି ଏବଂ ଗୋଟିକର ତୀବ୍ରତା ଓ ଅନ୍ୟର ଅବକ୍ଷୟଦ୍ୱାରା ଏହା ପୀଡ଼ିତ । ବିଶେଷ କରି ସଭ୍ୟତାର ଉନ୍ନତି ବା ଅବନତି ସମୟରେ ଏହି ଦୁଇ ଅବସ୍ଥା ମଧ୍ୟରେ ଭାଗ୍ୟର କ୍ରୀଡ଼ା ସ୍ପଷ୍ଟ । ଉନ୍ନତିକାମୀ ସଭ୍ୟତା ଯଦି ଶ୍ରେଣୀରେ ନ୍ୟାୟ ଓ ସମତା ଆଣିଦିଏ, ତେବେ ତା ଫଳରେ ସାଧାରଣଭାବରେ ଉତ୍ସାହ ଓ ପରିଣତ-ଶକ୍ତିର ବିକାଶ ଘଟେ । ଅନ୍ୟ ପକ୍ଷରେ ଯଦି ଶ୍ରେଣୀ-ସଂଘର୍ଷର ପ୍ରବଳତାରେ ସଭ୍ୟତାର ଅବନତି ଘଟେ, ତା ହେଲେ ଏହି ଅବନତି ଶ୍ରେଣୀର ଶକ୍ତିକୁ ନଷ୍ଟ କରେ । ସେହିପରି ଜାତିପ୍ରଥାର ଚିନ୍ତାହୀନତା ଓ ଆବଦ୍ଧତା ସହିତ ସଭ୍ୟତାର ଅବନତିର ଯଥେଷ୍ଟ ସଂପର୍କ ରହିଛି ।

ଏହା ହିଁ କଅଣ ମଣିଷର ଭାଗ୍ୟ ? ତା ସମ୍ମୁଖରେ ଇତିହାସର ଅନନ୍ତ ମରୁଭୂମି ପ୍ରସାରିତ ଓ ସଭ୍ୟତାର ଉତ୍ଥାନ-ପତନ ଦେଖି ଦେଖି ସେ କଅଣ କେବଳ ମର୍କଟପରି ଜାତିରୂପକ ଡାଳରୁ ଶ୍ରେଣୀରୂପକ ଡାଳ ମଧ୍ୟରେ ଆନ୍ଦୋଳିତ ହେଉଥିବ ? ଇତିହାସର ଚକ୍ର ବାରମ୍ବାର ପୁଷ୍ଟିକ୍ଷମ ପରିବେଶରେ ପ୍ରକାଶ ପାଉଛି, ଏହା ହିଁ କେତେକ ଇତିହାସ ବ୍ୟାଖ୍ୟାକାରମାନଙ୍କର ମତ ଓ ଏହାଦ୍ୱାରା ସେମାନେ ମଣିଷ ମନରେ ବିଶ୍ୱାସ ଆଣିବାକୁ ଚେଷ୍ଟା କରିଛନ୍ତି । ଗୋଟାଏ ଯୁକ୍ତିସମ୍ମତ ପରିବେଶ ସୃଷ୍ଟି କରିବାପାଇଁ ଏ କେବଳ ଭାଷାର ବିଭ୍ରାନ୍ତି । ବରଂ ଯୁକ୍ତି ପରିବର୍ତ୍ତେ ଏ ଏକ ଅନିଶ୍ଚିତ ମାନସିକତାରେ ବିଶ୍ୱାସ । କିନ୍ତୁ ଏହି ତଥାକଥିତ ପୁଷ୍ଟିକ୍ଷମ ପରିବେଶର ପୁନଃ ପୁନଃ ପ୍ରକାଶ ଓ ଇତିହାସର ବସ୍ତୁତାନ୍ତ୍ରିକ ବିଶ୍ଳେଷଣର ଦୈହିକ ବା ଭଗ୍ନ ଅଗ୍ରଗତିର ବିଶେଷ ପାର୍ଥକ୍ୟ ନାହିଁ । ଏପରି ବିଶ୍ୱାସ ପାଇଁ ଇତିହାସରେ ବିଶେଷ ତଥ୍ୟ ନାହିଁ ।

ଇତିହାସ-ଚକ୍ରର ବିଭିନ୍ନ ପର୍ଯ୍ୟାୟରେ ପୁନରାବୃତ୍ତି ହୋଇଛି ଏ କଥା ସତ; କିନ୍ତୁ ଏହି ବିଭିନ୍ନତାକୁ ସୃଷ୍ଟିଶୀଳ ବା ପ୍ରଗତିବାଧା ବୋଲି କହିବାର କିଛି ପ୍ରମାଣ ନାହିଁ । ପୁରାତନ ଭାରତ ବା ରୋମ୍ ବା ଆଧୁନିକ ୟୁରୋପ ବା ଯେ କୌଣସି ସମୟରେ ପୃଥିବୀର ଯେ କୌଣସି ଦେଶରେ ବିଭିନ୍ନ ଶ୍ରେଣୀ ମଧ୍ୟରେ ପାର୍ଥକ୍ୟ ନିଶ୍ଚୟ ରହିଛି । କିନ୍ତୁ ଏହି ପାର୍ଥକ୍ୟକୁ ସୃଷ୍ଟିଶୀଳ ବୋଲି କହିବାରେ ବିଶେଷ ତାତ୍ପର୍ଯ୍ୟ ନାହିଁ । ଜାତି ଜାତି ମଧ୍ୟରେ ଥିବା ପ୍ରଭେଦ ବିଷୟରେ ମଧ୍ୟ ଏହି ଏକ କଥା ହିଁ ପ୍ରଯୁଜ୍ୟ । ଏହି ଏକ ପ୍ରଭେଦକୁ ଆନ୍ଦୋଳିତ ଚକ୍ର ରୂପରେ ସାମନ୍ତବାଦୀ ଅବସ୍ଥାରୁ ସାମ୍ୟବାଦୀ ସଭ୍ୟତାକୁ ଅଗ୍ରଗତି ଭାବରେ ଚିତ୍ର କରିବା, ଠିକ୍ ଆଜି କାଲିକାର ଶିଳ୍ପ ପ୍ରଗତିର ଦିନରେ କେଉଁଠିହେଲେ କେହି ଦରିଦ୍ର ନାହିଁ ବୋଲି ଚିନ୍ତା କରିବା ପରି ସମାନ ଭ୍ରମପୂର୍ଣ୍ଣ ।

ଇତିହାସର ଅଭିବୃଦ୍ଧିରେ ଆଜିର ସଭ୍ୟତା ପୂର୍ବବର୍ତ୍ତୀ ସଭ୍ୟତା-ମାନଙ୍କଠାରୁ ଯେତେ ଭିନ୍ନ ହେଲେ ବି ଦେହର ଦୁର୍ବଳତା ଓ ମନର ଦରିଦ୍ରତା ଆଗେ ଯେପରି ଥିଲା, ଆଜି ବି ଠିକ୍ ସେହିପରି ଅଛି । ପୃଥିବୀର ଲୋକସଂଖ୍ୟାର ପ୍ରାୟ ଦୁଇ ତୃତୀୟାଂଶ ଏବେ ବି ଅତି ଅନୁନ୍ନତ ଅସ୍ଥାରେ ରହିଛନ୍ତି । ଲୋକସଂଖ୍ୟା ବଢ଼ିବା ଫଳରେ ଜମିର ପରିମାଣ କମିଯିବା ହେତୁ ଏହା ଘଟିଛି ବା ଏହାର ଅନ୍ୟ କୌଣସି କାରଣ ଅଛି, ତାହା ବିଷୟସାପେକ୍ଷ । ପୁଞ୍ଜିବାଦୀ ସଭ୍ୟତାର ଏହି ଅଗଣିତ ଅନୁନ୍ନତ ପରାଧୀନ ଲୋକଙ୍କୁ ଯଦି କୁହାଯାଏ ଯେ, ସେମାନେ ଆହୁରି ଅନୁନ୍ନତ ଅବସ୍ଥାରୁ କ୍ରମଶଃ ଉନ୍ନତି କରି ଏ ଅବସ୍ଥାକୁ ଆସିଛନ୍ତି, ସେମାନେ ନିଶ୍ଚୟ ଏହାକୁ ଘୋର ପରିହାସ ବୋଲି ମନେ କରିବେ । ଇତିହାସର ସୃଷ୍ଟି ବା ଉପଲବ୍ଧିରେ ସବୁଠାରୁ ବଡ଼ ଭୁଲ ହେଉଛି, ଆମେ ଆଂଶିକ ଦକ୍ଷତାକୁ ସମଗ୍ର ଦକ୍ଷତା ବୋଲି ଭାବିବସୁ ବା ପୃଥିବୀର ଅଂଶ ବିଶେଷରେ ଯେଉଁ ଉନ୍ନତ ଅବସ୍ଥା ଦେଖୁ, ସାରା ପୃଥିବୀର ଠିକ୍ ସେହି ଅବସ୍ଥା ବୋଲି ମନେକରୁ । ଇତିହାସର ଶୁଷ୍କ ମରୁଭୂମି-ମାନସ-ଚକ୍ଷୁରେ ଏପର୍ଯ୍ୟନ୍ତ ଯାହା ଦିହାଇନାହିଁ, ସେହିପରି ଫଳ-ପୁଷ୍ପଶୋଭିତ ଉଦ୍ୟାନର ସ୍ୱପ୍ନ ବା ମରୀଚିକା ନ ଆଣିଲେ ଭଲ । ମଣିଷ-ଇତିହାସର ଚକ୍ର ଯେପରି ଭାବରେ ପର୍ଯ୍ୟାୟ-କ୍ରମେ ପରିବର୍ତ୍ତିତ ହୁଏ, ସେଥିରେ ବିଭିନ୍ନତା ନିଶ୍ଚୟ ଅଛି; କିନ୍ତୁ

କେବଳ ମଣିଷର ବୁଦ୍ଧି ଏହି ବଭିନ୍ନତାକୁ ସୃଷ୍ଟିଶୀଳ କରିପାରେ । ମଣିଷ-ଇତିହାସର ବିଶେଷ ବିଶେଷ ମୁହୂର୍ତ୍ତରେ ସମ୍ପୂର୍ଣ୍ଣ ଦକ୍ଷତା ଓ ଆଂଶିକ ଦକ୍ଷତା ମଧ୍ୟରେ କିଏ ଭଲ, ଏହି ନିଷ୍ପତ୍ତି ଦେବାର ସୁଯୋଗ ଆସିଛି । ଆଜି ବି ଏହିପରି ଏକ ନିଷ୍ପତ୍ତିର ସମୟ ଉପସ୍ଥିତ । ସମାଜରେ ଶ୍ରେଣୀ ଓ ଜାତି ମଧ୍ୟରେ ଆଭ୍ୟନ୍ତରୀଣ ଆନ୍ଦୋଳନ ଓ ସଭ୍ୟତାର ବାହ୍ୟ ଉତ୍ଥାନ ଓ ପତନର ପରିବେଶ ଠିକ୍ ଠିକ୍ ଉପଲବ୍ଧି କଲେ ଶ୍ରେଣୀ ଓ ଜାତିର ବିଲୁପ୍ତି ସମ୍ଭବ ହେବ ଓ ଆଗେଇ ଆଗେଇ ଆସୁଥିବା ଇତିହାସର ମରୁଭୂମିକୁ ଆଡ଼େଇଦେଇ ହେବ ।

ପଶ୍ଚିମ-ସଭ୍ୟତାରେ ବାଧା ଆସି ପହଞ୍ଚିଲାଣି ଓ ନିକଟରେ ଯଦି ଏ ସଭ୍ୟତାର ଅବନତି ଆରମ୍ଭ ହୁଏ, ତାହାହେଲେ ଏ ସଭ୍ୟତାର ସମୃଦ୍ଧି ଓ କ୍ଷମତାରେ ପରିବର୍ତ୍ତନ ଅସିବ । ପଶ୍ଚିମ ୟୁରୋପ ଆଜି ପୃଥିବୀର ସର୍ବୋତ୍ତମ ଓ ସର୍ବୋତ୍କୃଷ୍ଟ ଅଞ୍ଚଳ ନୁହେଁ । ଯୁକ୍ତରାଜ୍ୟ ଏହି ଗୌରବର ଅଧିକାରୀ ଓ ଋଷିଆ ଦ୍ରୁତ ଉନ୍ନତି କରୁଛି । ଏସିଆ ଓ ପ୍ରଶାନ୍ତ ମହାସାଗର ଅଞ୍ଚଳ ଆଡ଼କୁ ପରିବର୍ତ୍ତନର ସ୍ରୋତ ବେଶ୍ ଗଭୀର । ତା ଛଡ଼ା ପଶ୍ଚିମ ୟୁରୋପର କ୍ଷମତା କମି ଆସିବା ସଙ୍ଗେ ସଙ୍ଗେ ସେଠାରେ ଜାତିପ୍ରଥାର ନିମ୍ନୂଳୀକରଣ କ୍ରମଶଃ ସ୍ପଷ୍ଟ ହୋଇଉଠୁଛି । ଶ୍ରେଣୀହୀନ ସମାଜ ବା ଏକ ପୃଥିବୀର ଧାରଣା ଯେ ଆଉ କେବେ ସମ୍ଭବ ହେବ, ଏ ଆଶା ଆଦୌ ନାହିଁ । ସେହି ସୁବର୍ଣ୍ଣ ଯୁଗ, ଯେଉଁଠି ଯୁଦ୍ଧ ନ ଥିବ, ଦରିଦ୍ରତା ନ ଥିବ, ମଣିଷ ଜୀବନର ଅର୍ଥ ଖୋଜି ପାଇ ଏକ ନିଷ୍ଠଳ ଆନନ୍ଦ, ଆତ୍ମସନ୍ତୋଷ ଓ ବାହ୍ୟଶାନ୍ତିରେ ବଞ୍ଚି ପାରିବ, ଏ ସ୍ୱପ୍ନ ଆଜି କେବଳ ମରୀଚିକା ।

ଏ ଚିନ୍ତା ଖୁବ୍ ନିରାଶାଜନକ ମୁଁ ମାନୁଛି । ନିରାଶା ଏହି ଅର୍ଥରେ ଯେ, ବୋଧହୁଏ ଇତିହାସ ଜରିଆରେ ଜୀବନ ରହସ୍ୟର ଉପଲବ୍ଧି ସମ୍ଭବ ନୁହେଁ । କିନ୍ତୁ ତା ବୋଲି ଜୀବନର ଅର୍ଥ ଯେ ଆଦୌ ଉପଲବ୍ଧି କରି ହେବ ନାହିଁ, ତା ନୁହେଁ । କେବଳ ଇତିହାସ ଜରିଆରେ ଏହା ସମ୍ଭବ, ଏପରି ଭାବିବା ବୋଧହୁଏ ଭୁଲ । ଇତିହାସ ବାହାରେ ଅନ୍ୟ ପନ୍ଥା ଅଛି । ତଥାପି ଯେତେଯାକେ ଐତିହାସିକ ଉନ୍ନତି ଓ ଚକ୍ରାକାର ମତବାଦ କଥା ଚିନ୍ତା କରିଯିବ, ଜୀବନ ସମ୍ପର୍କରେ ଏହି ମତରେ ନୈରାଶ୍ୟ ରହିବ ହିଁ ରହିବ । ଏପରି ମତବାଦର ବ୍ୟାଖ୍ୟା ହେଉଛି ବିଭିନ୍ନ ଯୁଗ ଓ ପରିବେଶ,

କ୍ଷମତା ଓ ସମୃଦ୍ଧି, ଦାରିଦ୍ର୍ୟ ଓ ଅବସନ୍ନତା ମଧ୍ୟରେ ଚକ୍ରପରି ଘୂର୍ଣ୍ଣନ ଓ ପରିବର୍ତ୍ତନ । ଆମେ ସାଧାରଣ ବୁଦ୍ଧିରେ ହୁଏ ତ ଏପରି ଏକ ଭବିଷ୍ୟତର ଚିନ୍ତା କରିପାରିବା ନାହିଁ, ଯେତେବେଳେ ସମଗ୍ର ମଣିଷ ଜାତି ନିଜକୁ ନିୟନ୍ତ୍ରିତ କରି ଜାତି ଜାତି ମଧ୍ୟରେ ବାହ୍ୟସଂଘର୍ଷ ଓ ଭିତରର ଶ୍ରେଣୀ-ସଂଘର୍ଷକୁ ଲୋପ କରିପାରିବ; ତେବେ ଇତିହାସର ଅଭିବୃଦ୍ଧିକୁ ଲକ୍ଷ୍ୟକଲେ ମନେହେବ, ସମ୍ପୂର୍ଣ୍ଣ ଭାବରେ ନ ହେଲେ ବି ଅନ୍ତତଃ କେତେକ ପରିମାଣରେ ଇତିହାସରୁ ଜୀବନ-ରହସ୍ୟର ସନ୍ଧାନ ମିଳିପାରେ ।

ଇତିହାସରେ ଜାତି ଓ ସଭ୍ୟତାର ଉତ୍ଥାନ ପତନ ସବୁବେଳେ ଲାଗିରହିଛି । ବ୍ରିଟିଶ୍ ସାମ୍ରାଜ୍ୟର ଉତ୍ଥାନ ବା ଫାରେ ସାମ୍ରାଜ୍ୟର ପତନ, ଗୁପ୍ତ ସାମ୍ରାଜ୍ୟର ଉତ୍ଥାନ ବା ରୋମ୍ ସାମ୍ରାଜ୍ୟର ପତନ ଏ ସବୁ ତ ଜଣାକଥା ଓ ଇତିହାସରେ ଆମେ ସେ ସବୁର ବିଭିନ୍ନ କାରଣ ବିଷୟରେ ପଢ଼ିଛୁ ; କିନ୍ତୁ ସ୍କୁଲରେ ଆମେ ଯାହା ପଢ଼, ସେ ସବୁକୁ ପରେ ଭୁଲିଯାଉ । ପ୍ରଥମେ ପ୍ରଥମେ ସେ ସବୁ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ ହେଉଥିଲେ ମଧ୍ୟ ପରେ ଅନ୍ୟାନ୍ୟ ଅନେକ ସଭ୍ୟତାର ଉତ୍ଥାନ ପତନ କଥା ସ୍ୱାଧୀନ ଭାବରେ ଚିନ୍ତା କଲାପରେ ସେସବୁ କାରଣ ଅର୍ଥହୀନ ହୋଇପଡ଼େ । ଆମକୁ ଯେତେ କାରଣ କଥା କୁହାଯାଇଛି, ସେ ହେଲା ଆଭ୍ୟନ୍ତରୀଣ ଈର୍ଷା ଓ ଶତ୍ରୁତା, ସାମାଜିକ ଦୃଢ଼ତାର ଅଭାବ ଓ ମଦାନ୍ଧତା ପ୍ରଭୃତି । ଏପରି ଅନେକ ଅନେକ ।

ବିଶେଷ କରି ଭିତରର ଈର୍ଷା, ମଦାନ୍ଧତା, ଆଳସ୍ୟ, ବିଳାସପ୍ରିୟତା ଓ ସାମାଜିକ ବିପର୍ଯ୍ୟୟ, ଏ ସବୁ ହେଲା ପ୍ରଚଳିତ କାରଣ । କିନ୍ତୁ କେଉଁ କାରଣହେତୁ ସମାଜରେ ଏସବୁ ସମ୍ଭବ ହେଲା, ପରବର୍ତ୍ତୀ ରୋମାନ୍ ସମ୍ରାଟମାନେ କାହିଁକି ଏତେ ବିଳାସବ୍ୟସନରେ ବୁଡ଼ି ରହିଥିଲେ ବା ଅଯୋଧ୍ୟାର ନବାବ ଏତେ ବିଳାସପ୍ରିୟ କାହିଁକି ହେଲେ ? ସଭ୍ୟତା ଭାଙ୍ଗିଯାଉଥିବା ସମୟରେ ବଞ୍ଚିବାରେ କୌଣସି ଉଦ୍ଦେଶ୍ୟ ବା ଅର୍ଥ ରହେ ନାହିଁ । ସେତେବେଳେ ବାହାର ସାମ୍ରାଜ୍ୟର ରୂପ ବଢ଼େ, ଚାରିପାଖରେ ଏକ ଘୋର ନିରଣଭାବ ଖେଳିଯାଏ । ପୁରୁଣାଭାବରେ ବଞ୍ଚିବା ଘୋର ବିରକ୍ତିଜନକ ହୋଇଉଠେ ଓ ପୁରୁଣା ନିୟନ୍ତ୍ରଣରେ ଆନନ୍ଦ ନ ଥାଏ । ଶ୍ରେଣୀର ଶକ୍ତି ବ୍ୟଭିଚାରରେ ପରିଣତ ହୁଏ, ଜାତିର

ଧୃତତାରେ ଅବସନ୍ନତା ଆସେ ଓ ପ୍ରତ୍ୟେକ ପାଇଁ ଏକ ଅଶାଳୀନ, ଅରୁଚିକର ଆନନ୍ଦର ଲୋଭ ପ୍ରବଳ ହୋଇଉଠେ । ତେଣୁ ସଭ୍ୟତା ପତନର ମୂଳ କାରଣ ସମାଜର ଆଭ୍ୟନ୍ତରୀଣ ଓ ବାହ୍ୟ ଆନ୍ଦୋଳନର ପ୍ରକୃତିରେ ନିହିତ । ଯେଉଁ ସଭ୍ୟତା ସର୍ବୋତ୍ତମ ଦକ୍ଷତା ହାସଲ କଲଣି ଓ ଆଉ ଆଗକୁ ଯାଇପାରିବ ନାହିଁ, ସେ ଠିକ୍ ପ୍ରାଚୀନ ଅତିକାୟ ପ୍ରାଣୀ ପରି ନିଜ ଭରରେ ବା ବାହାର ଚାପରେ ପଡ଼ି ନଷ୍ଟ ହୋଇଯିବ ।

ଇତିହାସର ମରୁଭୂମିରେ ଚିରସ୍ଥାୟୀ ଶ୍ୟାମଳ ଶସ୍ୟ ପ୍ରାନ୍ତର ସୃଷ୍ଟି କରି ସେଥିରେ ବିଭିନ୍ନ ଯୁଗ ଓ ସ୍ଥାନ ନିଜର ମନମୁଗ୍ଧକାରୀ ପୁଷ୍ପ ଉଦ୍ୟାନ କରିପାରିବାର ଯେଉଁ ଉଦ୍ୟମ, ତା' ଫଳରେ ଆଂଶିକ ସର୍ବୋତ୍ତମ ଦକ୍ଷତା ପରିବର୍ତ୍ତେ ସମଗ୍ର ଦକ୍ଷତାର ରହସ୍ୟ ଉଦ୍‌ଘାଟିତ ହୋଇପାରିବ । ଯେତେବେଳେ ଶ୍ରେଣୀ ଓ ଜାତି ପରସ୍ପର ପଛରେ ଧାଇଁ ବୁଲୁଛନ୍ତି ଓ ସମାଜର ଶକ୍ତି ସାଙ୍ଗେ ସାଙ୍ଗେ କମିଛି ବା ବଢ଼ିଛି, ମଣିଷ ଜାତି କ୍ରମଶଃ ଶାରୀରିକ ବା ସାଂସ୍କୃତିକ ଅବଧାରଣାର ପ୍ରଣାଳୀରେ ଆବଦ୍ଧ ହୋଇଛି । ଯୁଦ୍ଧବିଗ୍ରହ ଦ୍ୱାରା ଓ ଅତି ବିରଳ କ୍ଷେତ୍ରରେ ଅନୁରୋଧ ଓ ବୁଝାମଣା ଦ୍ୱାରା ମଣିଷ ଜାତିକୁ ଏକାଠି କରିବାର ଚେଷ୍ଟା ହୋଇଛି । ତେବେ ଏପରି ମିଳନ କେବେ ସୁଚିନ୍ତିତ ଭାବରେ କାର୍ଯ୍ୟକାରୀ ହୋଇନାହିଁ ଓ ଅନ୍ୟାନ୍ୟ ଶକ୍ତିମାନଙ୍କ ଯୋଗୁଁ ଆମ୍ଭମାନଙ୍କୁ ଅଜଣା ଓ ଆମ୍ଭେମାନେ ଗ୍ରହଣ ନ ଥିବା ଫଳ ପ୍ରାପ୍ତି ହୋଇଛି । ଏପରି ମିଳନ ସାରା ପୃଥିବୀରେ ସମସ୍ତଙ୍କୁ ଏକତ୍ର କରି କେବେ ସମ୍ଭବ ହୋଇନାହିଁ । କାରଣ ଗୋଟିଏ ଜାତି ବା ଗୋଟିଏ ସଭ୍ୟତା ମାଧ୍ୟମରେ ଏପରି ଚିନ୍ତା ପ୍ରସାରିତ ହୋଇଛି ଓ ଏହି ଜାତି ବା ସଭ୍ୟତାର ଶକ୍ତି କମିବା ସଙ୍ଗେ ସଙ୍ଗେ ଏ ଚେଷ୍ଟା ବି ବିଲୁପ୍ତ ହୋଇଛି ।





## ମଣିଷ ଜାତିର ସମାନତା

ଦୈହିକ ଓ ସାଂସ୍କୃତିକ ଅବଧାରଣାର କେତେକ ବିଶିଷ୍ଟ ଧାରା ବିଶେଷକରି ଭାରତରେ ଦେଖାଯାଏ । ଆମର ପୂର୍ବପୁରୁଷମାନେ ବହୁ ଦୂରଦୂରାନ୍ତ ସ୍ଥାନମାନଙ୍କୁ ଯିବା ଆସିବା କରୁଥିଲେ ଓ ମୃତ ସଂସ୍କାର ବା ରୀତିନୀତିରେ ଆବଦ୍ଧ ହୋଇ ଯେଉଁଠାରେ ସୁବିଧା ହେଉଥିଲା, ସେଠାରେ ଘର କରି ରହୁଥିଲେ । ସେମାନେ ତ ନାହାନ୍ତି, ସେମାନଙ୍କର ଉତ୍ତରପୁରୁଷ ବି ଆଉ ନାହାନ୍ତି । କିନ୍ତୁ ସେମାନେ ଯେଉଁ ଯେଉଁ ସ୍ଥାନରେ ରହୁଥିଲେ ବା ଯେଉଁମାନଙ୍କୁ ଭଲ ପାଉଥିଲେ, ସେହିସବୁ ଅଧିବାସୀଙ୍କ ଜୀବନରେ ସେମାନେ ଲକ୍ଷ ଲକ୍ଷ ରୂପରେ ଫେରି ଆସିଛନ୍ତି । ସେହିମାନଙ୍କୁ ହିଁ ସଂସ୍କୃତରେ ମୂଳର ବୀଜ-ରକ୍ତ ଭାବରେ ବର୍ଣ୍ଣନା କରାଯାଇଛି ।

ସମଗ୍ର ପୂର୍ବ ଏସିଆର ଉତ୍ତରରୁ ଦକ୍ଷିଣକୁ ବିସ୍ତୃତ ଅଞ୍ଚଳରେ ଭାରତର ପରିଚୟ ବହନ କରୁଥିବା ଅସଂଖ୍ୟ ନରନାରୀ ବାସ କରନ୍ତି । ବ୍ୟାଙ୍କକ୍‌ର ଲୁମ୍ବିନି ପାର୍କ ବା ସେହିପରି ଅନ୍ୟ କୌଣସି ସ୍ଥାନରେ ଭାରତୀୟ ପରିଦର୍ଶକ ହୁଏତ ହଠାତ୍ କୌଣସି ପୁଅ ବା ଝିଅକୁ ଭେଟିପାରେ, ଯାହାକୁ ଦେଖିଲେ ମନେହେବ ସତେ ଯେପରି ସେ ୧୫୦୦ ବର୍ଷ ତଳର କୌଣସି ଭାରତୀୟ ପୂର୍ବପୁରୁଷର ଉତ୍ତରପୁରୁଷ । ତା ଭାଷା ବୁଝିବା ହୁଏତ ସମ୍ଭବ ନ ହୋଇ ପାରେ; କିନ୍ତୁ ମନେହେବ ସତେ ଯେପରି ତା ଭାଷାରେ ଭାରତୀୟ ଭାଷାରୁ ବହୁ ଶବ୍ଦ ମିଶି ରହିଛି ଏବଂ ସେ ବହୁ ପୁରୁଣା ସ୍ମୃତି ମନରେ ଆଣିଦେବ, ଯାହାସବୁ ହୁଏତ ଭୁଲିବା ସମ୍ଭବ ନୁହେଁ ; କିନ୍ତୁ ଯାହା ଆଜି ସ୍ପଷ୍ଟ ଭାବରେ

ମନେ ନାହିଁ । ଆସାମ, ବ୍ରହ୍ମଦେଶ ଓ ଆହୁରି ପୂର୍ବଦେଶର ସୁନ୍ଦରୀ ସ୍ତ୍ରୀମାନେ ପୁରୁଷଙ୍କୁ ଦେଖିଲେ ମେଣ୍ଢାକରି ଘରେ ବାନ୍ଧି ରଖନ୍ତି, ଏକଥା କେଉଁ ଘରଣିପୁଅ ପିଲା ତା ବୁଢ଼ିମା ପାଖରୁ ନ ଶୁଣିଛି ? ପୁରୁଣା ଈର୍ଷାର କିଛି କିଛି ଜାତିସ୍ମର ସ୍ମୃତି ଏହିସବୁ ଗଳ୍ପରୁ ସୂଚିତ ହୁଏ । ଏହିସବୁ ଆନନ୍ଦଦାୟକ ଈର୍ଷା ଆହୁରି ବ୍ୟାପକ ହୋଇ ଯଦି ସାରା ପୃଥିବୀର ପୁରୁଷ ଓ ସ୍ତ୍ରୀମାନଙ୍କ ସମ୍ପର୍କରେ କୁହାଯାଇ ପାରନ୍ତା, ତା ହେଲେ ଇତିହାସର ଦାର୍ଶନିକ ଖୁବ୍ ଖୁସି ହୁଅନ୍ତା ।

ମୁଁ ମୋର ଏହି ପୂର୍ବପୁରୁଷମାନଙ୍କ ବିଷୟରେ ଯଥେଷ୍ଟ ଗର୍ବ ଅନୁଭବ କରେ । କାରଣ ସେମାନେ ସାମ୍ରାଜ୍ୟବାଦର ପ୍ରସାର ନକରି ମଣିଷର ଅନ୍ୟ ମଣିଷ ସହିତ ଘନିଷ୍ଠ ସମ୍ପର୍କ ପାଇଁ ଚେଷ୍ଟା କରୁଥିଲେ । କିନ୍ତୁ ଗର୍ବ କରିବା ବୋଧହୁଏ ଠିକ୍ ଦୃଷ୍ଟିଭଙ୍ଗୀ ନୁହେଁ । ମନେହେବ ସତେ ଯେପରି ଜାତି ଜାତି ବା ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ କୃତ୍ରିମ ମିଳନ ହେଲା ଓ ଏହା ଫଳରେ କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଗର୍ବ କରିବାର ଅବକାଶ ପାଇଲେ । କିନ୍ତୁ ଏକଥା ସତ ଯେ, ପୃଥିବୀର ସବୁ ବଡ଼ ବଡ଼ ଜାତି ପକ୍ଷରେ ବିଭିନ୍ନ ସମୟରେ ଗର୍ବ କରିବାର ଅବକାଶ ଆସିଛି ଓ ସେମାନେ ବିଭିନ୍ନ ସମୟରେ ଦୈହିକ ଓ ସାଂସ୍କୃତିକ ଅବଧାରଣାର ପରିବାହକ ହୋଇଛନ୍ତି । ବାସ୍ତବିକ୍ ସମଗ୍ର ମାନବଜାତି ଏହି ନିର୍ଦ୍ଦୋଷ ମିଶ୍ରଣର ପ୍ରଣାଳୀ ପାଇଁ ଗର୍ବ କରିବାର କଥା ।

ସଂସ୍କୃତ ଭାଷାର ସୁବର୍ଣ୍ଣ ସୂତ୍ରକଥା ଚିନ୍ତା କରାଯାଇପାରେ । ସଂସ୍କୃତ ଭାଷା ଓ ଏହି ଭାଷାର ଭଗ୍ନୀ ଓ କନ୍ୟା ଯଥା ପାଲି ଓ ପ୍ରାକୃତ ପ୍ରଭୃତି ଦ୍ୱାରା ସମଗ୍ର ଦକ୍ଷିଣ ଏସିଆ, ଏପରିକି ଏସିଆର ଅନ୍ୟାନ୍ୟ କେତେକ ଅଞ୍ଚଳ ମଧ୍ୟ ଏକାଠି ହୋଇପାରିଛି । ହଠାତ୍ ଯାକର୍ତ୍ତା ବା ବ୍ୟାଂକକ୍‌ରେ 'ପ୍ରଧାନମନ୍ତ୍ରୀ' 'ପଞ୍ଚଶୀଳ' ବା 'ରଥମାନୁ' ପ୍ରଭୃତି ଶବ୍ଦ ଶୁଣିବା ଅସ୍ୱାଭାବିକ ନୁହେଁ । ସୁରବାୟା ନିକଟରେ ମୋର ଜଣେ ପରିଚିତ ସୋସଲିଷ୍ଟ ବନ୍ଧୁଙ୍କର ସ୍ତ୍ରୀ ଓ ପିଲାମାନଙ୍କର ନା ହେଉଛି ଚୁକୁବତୀ, ପଦ୍ମାବତୀ, ଧର୍ମବାନ ପ୍ରଭୃତି ଓ ସେମାନେ ହେଉଛନ୍ତି ଗୋଟିଏ ମୁସଲମାନ ପରିବାର । ରଥମାନୁ ହେଉଛି ୧୯୩୨ ବିଦ୍ରୋହର ସ୍ମରଣରେ ନିର୍ମିତ ହୋଇଥିବା ଥାଇ ଜାତିର ଅତି ବିଶିଷ୍ଟ ସ୍ମାରକ ସ୍ତମ୍ଭ । ବ୍ୟାଂକକ୍‌ର ପ୍ରଧାନ

ଗସ୍ତା ମନ୍ଦିରେ ପଥରରେ ଏ ସ୍ତମ୍ଭଟି ନିର୍ମିତ ହୋଇଛି । ଏହି ସ୍ତମ୍ଭ ଉପରେ ପଥରରେ ତିଆରି ଗୋଟିଏ ବହି ରହିଛି ଓ ସେ ବହିଟି ହେଉଛି ସେ ଦେଶର ସଂବିଧାନ ।

'ରଥମାନୁ' କଅଣ ଏହା ଭାରତୀୟ ମାନ୍ତଦାତା 'ରାଷ୍ଟ୍ରମନୁ'ରୁ ଅପଭ୍ରଂଶ ନୁହେଁ ତ ! ମୌଳିକ ଶବ୍ଦ ପରିବର୍ତ୍ତେ ଏହିପରି ପରିବର୍ତ୍ତିତ ବହୁ ଭାରତୀୟ ଶବ୍ଦ ଦକ୍ଷିଣ ପୂର୍ବ ଏସିଆର ଭାଷାମାନଙ୍କରେ ଦେଖାଯାଏ । ଏଥିରୁ ମନେହେବ, ସାଂସ୍କୃତିକ ଅବଧାରଣା ଓ ସମ୍ପର୍କ ସ୍ୱତଃ ଶକ୍ତିକୁ ପ୍ରସାରିତ କରିବା ସଙ୍ଗେ ସଙ୍ଗେ ସଂଯତ ଓ ଘନିଷ୍ଠ କରେ । ସୁଦୂର ଟୋକିଓରେ ହୁଏତ ଭାରତୀୟ ଭାଷା ଓ ରୂପର ଖୁବ୍ ବେଶି ପରିଚୟ ନାହିଁ । ତଥାପି କାମକୁରା ବା ନାରାର ଅତିକାୟ ଗୌତମ ବୁଦ୍ଧ ମୂର୍ତ୍ତି ଭାରତର ସେହି ଗୌରବମୟ ଦିନଗୁଡ଼ିକ ମନେ ପକେଇ ଦିଏ- ଯେତେବେଳେ ଯୁଦ୍ଧ ବିଗ୍ରହଦ୍ୱାରା ନୁହେଁ, ଅନ୍ୟ ଉପାୟରେ ଭାରତଦ୍ୱାରା ଜାତି ଓ ସଂସ୍କୃତିର ମିଳନ ସମ୍ଭବ ହୋଇଥିଲା ଓ ସଭ୍ୟତା- ମହାସଭାରେ ଭାରତ ଶ୍ରେଷ୍ଠ ଆସନ ଲାଭ କରିଥିଲା । ଅତୀତରେ ଯୁଦ୍ଧ ବିଗ୍ରହଦ୍ୱାରା ବା ଅନ୍ୟ ଉପାୟରେ ଯେତେବେଳେ ଦୁଇ ଜାତି ପରସ୍ପରର ଖୁବ୍ ନିକଟକୁ ଆସନ୍ତି, ସେତିକିବେଳେ ଏହି ମିଳନ ବା ମିଶ୍ରଣ ସଂଘଟିତ ହୋଇଛି । ଦୁଇ ରାଜ୍ୟର ସୀମା ସବୁବେଳେ ଉତ୍ତେଜନା ସୃଷ୍ଟିକରେ । ଏହି ସୀମା ଉପରେ ଜାତି ଜାତି ଯୁଦ୍ଧ କରିଛନ୍ତି ଓ ପୁଣି ପରସ୍ପରକୁ ଭଲପାଇଛନ୍ତି । ଅନ୍ତତଃ ଅତୀତରେ ଯୁଦ୍ଧର ପରିଣାମରେ ସ୍ନେହ ଓ ଶ୍ରଦ୍ଧା ସମ୍ଭବ ହୋଇଛି ।

କେବଳ ଭାରତ ନୁହେଁ, ପୃଥିବୀର ସବୁ ଦେଶରେ ଓ ସବୁ ଜାତିରେ ଏହିପରି ଦୈହିକ ଓ ସାଂସ୍କୃତିକ ମିଳନ ସଂଘଟିତ ହୋଇଛି । ଆରବୀୟ ଭାଷାକୁ ଆଫ୍ରିକାର ସବୁ ନିଗ୍ରୋ ଭାଷାମାନଙ୍କର ମୂଳ ଭାବରେ ଧରିହୋଇ ପାରେ ଓ ଆଲେକ୍‌ଜାଣ୍ଡ୍ରିଆ ପ୍ରାୟ ୨୦୦୦ ବର୍ଷ ପର୍ଯ୍ୟନ୍ତ ସବୁ ଜାତିର ମିଳନ ସ୍ଥଳ ହୋଇଥିଲା । ଆଲେକ୍‌ଜାଣ୍ଡ୍ରିଆ, କାଏରୋ ଓ ନିକୋସିଆ ପ୍ରଭୃତି ଅଞ୍ଚଳରେ ଏତେ ଏତେ ବିଭିନ୍ନ ପ୍ରକାର ମୁହଁ ଦେଖାଯାଏ ଯେ, ବାସ୍ତବିକ କେତେ ଜାତି ଓ ଗୋଷ୍ଠୀ ଏହିସବୁ ସ୍ଥାନରେ ଯେ ଏକାଠି ହୋଇଥିବେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଭାରତୀୟ ଐତିହ୍ୟ ଅନୁଯାୟୀ

ଯେଉଁଠି ଦୁଇଟି ନଦୀ ମିଶେ, ସେ ଗୋଟିଏ ତୀର୍ଥସ୍ଥାନ । ଯେଉଁଠି ଦୁଇ ବା ଦୁଇରୁ ଅଧିକ ଜାତି ଆସି ମିଶନ୍ତି, ସେ ମଧ୍ୟ ଗୋଟିଏ ତୀର୍ଥ ସ୍ଥାନ ହେବା ଉଚିତ; କାରଣ ସେହିସବୁ ସ୍ଥାନରେ ଜାତି ଜାତି ମଧ୍ୟରେ ଦୈହିକ ଓ ସାଂସ୍କୃତିକ ମିଳନ ସମ୍ଭବ ହୁଏ ।

ଅନ୍ୟାନ୍ୟ ଭାଷାଗୋଷ୍ଠୀ ମଧ୍ୟ ବିଭିନ୍ନ ସମୟରେ ପ୍ରସାରିତ ହୋଇଛି । ଯିଶୁଖ୍ରୀଷ୍ଟଙ୍କର ଆରାମିକ୍ ଭାଷା ହୁଏତ ଖୁବ୍ ପ୍ରଚୁର ପାଇନାହିଁ; କିନ୍ତୁ ଆରାମିକ୍ ଅକ୍ଷର ଦୂର ଦୂରାନ୍ତକୁ ବ୍ୟାପିଯାଇଛି । ଗ୍ରୀକ୍ ଓ ଲାଟିନର ପ୍ରତ୍ୟକ୍ଷ ଉତ୍ତରାଧିକାରୀ ଅଛନ୍ତି । ତା'ଛଡ଼ା ବହୁ ଆଧୁନିକ ଭାଷାର ଏ ଦୁଇଟି ମୂଳ ଭାଷା । ଆଧୁନିକ କାଳରେ ଇଂରାଜୀର ଖୁବ୍ ଆଶ୍ଚର୍ଯ୍ୟଜନକ ପ୍ରସାର ଘଟିଛି । କିନ୍ତୁ ଏହି ପ୍ରସାରକୁ ଖୁବ୍ ଅଦ୍ଭୁତ ବୋଲି ଭାବିବା ଉଚିତ ନୁହେଁ । କାରଣ ଅତୀତରେ ମଧ୍ୟ ଅନ୍ୟଭାଷା ଖୁବ୍ ପ୍ରସାରଲାଭ କରିଥିଲା, ଯଦିଓ ସମୟର ଦୂରତା ହେତୁ ଆଜି ସେ ସବୁ ଖୁବ୍ ଶ୍ରେଷ୍ଠ ବୋଲି ମନେ ହେଉଛି । ରକ୍ତ ଓ ଭାଷା ବ୍ୟତୀତ ଅନ୍ୟାନ୍ୟ ଦିଗରେ ମଧ୍ୟ ଯେପରି କି ଜୀବନଯାପନ ପ୍ରଣାଳୀ, ଚିନ୍ତା, ଧର୍ମ, ଉତ୍ପାଦନର କୌଶଳ ପ୍ରଭୃତିର ମାଧ୍ୟମରେ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ମିଳନ ସଂଘଟିତ ହୋଇଛି । ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ ଓ ଇସଲାମ୍ ଏହି ତିନୋଟି ବିରାଟ ଧର୍ମ ପ୍ରାୟ ସାରା ବିଶ୍ୱକୁ ଆଚ୍ଛନ୍ନ କରିଛି । ତେବେ ଏହି ସଂପର୍କରେ ଗୋଟିଏ କଥା ମନେ ରଖିବାକୁ ହେବ । ଯଦିଓ ବହୁ ବିଭିନ୍ନ ଭାବରେ ମଣିଷ ଜାତି ପରସ୍ପରର ନିକଟବର୍ତ୍ତୀ ହୋଇଛି, ସେହିପରି ଅନେକ କ୍ଷେତ୍ରରେ ସମୟକ୍ରମେ ପରସ୍ପର ଭିତରେ ଦୂରତା ବି ଆସିଛି ଓ ଏହି ଦୂରତା ବଢ଼ିଛି ।

ବଡ଼ ବଡ଼ ଜାତିମାନଙ୍କର ମୂଳସ୍ଥାନ କେଉଁଠି ଓ ପରେ ସେମାନେ ପରସ୍ପରକୁ କେଉଁଠି ଭେଟିଲେ, ଏ ସଂପର୍କରେ ବହୁ ଆଲୋଚନା ହୋଇଛି । ତେବେ ବୋଧହୁଏ ଏକଥା ସତ ଯେ, ଗୋଟିଏ ଗୋଷ୍ଠୀରୁ ପରେ କାଳକ୍ରମେ ବହୁ ବିଭିନ୍ନ ଚରିତ୍ରର ବିଭିନ୍ନ ଗୋଷ୍ଠୀର ସୃଷ୍ଟି ହୋଇଛି । ଆଜି ବହୁ ମଂଗୋଲାଏଡ୍, ଆର୍ଯ୍ୟ ବା ନିଗ୍ରୋ ଗୋଷ୍ଠୀ ରହିଛନ୍ତି । କିନ୍ତୁ ଏକ ସମୟରେ ଏ ପ୍ରତ୍ୟେକର ଗୋଟିଏ ଗୋଟିଏ ଗୋଷ୍ଠୀ ଥିଲା । ତେଣୁ ଆଜି ଯେତେବେଳେ ପୁଣି ସମସ୍ତଙ୍କୁ ଏକାଠି କରିବାର ଚିନ୍ତା ହେଉଛି, ସେମାନଙ୍କ ଭିତରେ ଥିବା ପ୍ରଭେଦକୁ ଭୁଲିଯିବା ଠିକ୍ ହେବ କି ? ଯେ କୌଣସି ତତ୍ତ୍ୱ

ଐତିହାସିକ ତଥ୍ୟ ଉପରେ ପ୍ରତିଷ୍ଠିତ ହେବା ଉଚିତ ଓ ସେଥିପାଇଁ ସମୟ ଦରକାର । ତଥାପି କେତେକ ଯୁକ୍ତିସମ୍ମତ ସମ୍ଭାବନା କଥା କୁହାଯାଇ-ପାରେ ।

ମଣିଷ ଜାତିର ଆରମ୍ଭ ସମୟରେ କେତେକ ବଡ଼ ବଡ଼ ଅଂଚଳରେ ପରସ୍ପର ସହିତ ସଂପର୍କ ନ ରଖି ଠିକ୍ ବନ୍ଦୀ ହେଲାପରି ବିଭିନ୍ନ ଗୋଷ୍ଠୀମାନେ ରହୁଥିଲେ । ଏହି ଗୋଷ୍ଠୀମାନେ ହୁଏତ ଖୁବ୍ ବିରାଟ ଅଞ୍ଚଳ ଅଧିକାର କରି ରହିଥିଲେ; କିନ୍ତୁ ଗୋଟିଏ ଗୋଷ୍ଠୀର ଅନ୍ୟ ସହିତ ଆଦୌ ସଂପର୍କ ନଥିଲା ଓ ମଣିଷ ସମାଜ ଖଣ୍ଡ ଖଣ୍ଡ ହୋଇ ପ୍ରତ୍ୟେକ ନିଜର ନିର୍ଜନ କାରାଗାରର ଗୌରବରେ ବଢ଼ି ଉଠୁଥିଲେ । ଅନେକ ହୁଏତ ଏହାକୁ ଶୁଦ୍ଧ ଓ ଅବିମିଶ୍ର କହି ଏଥିରେ ରୋମାଞ୍ଚର ସନ୍ଧାନ ପାଇ ପାରନ୍ତି; କିନ୍ତୁ ମୁଖ୍ୟତଃ ଏହା ଅପକ୍ରଣର ଓ ଅପରିପକ୍ୱ ଜୀବନ ।

ଯେତେବେଳେ କାରାଗାର ଭାଙ୍ଗି ସଂପର୍କ ପ୍ରତିଷ୍ଠିତ ହେଲା, ସେ ଏକ ଘୋର ଉତ୍ତେଜନାର ମୁହୂର୍ତ୍ତ । ଆବିଷ୍କାର, ଅନୁସଂଧାନ, ଦୂର-ଦୂରାନ୍ତକୁ ଦୁଃସାହସିକ ଯାତ୍ରା ସବୁ ହଠାତ୍ ଆରମ୍ଭ ହେଲା ଓ ମଣିଷ ଜାତି ନିଜର ଉନ୍ମାଦନାରେ ନିଜକୁ ଆହୁରି ଭଗ ଭଗ କରିପକାଇଲା । ଏ ଠିକ୍ ପ୍ରେମିକ ପରି ପ୍ରଥମେ ଅଲଗା ଅଲଗା ହୋଇ ପରେ ଏକାଠି ହେବା । କାରଣ ଗୋଟିଏ ଗୋଷ୍ଠୀର ଲୋକ ମୂଳ ଗୋଷ୍ଠୀରୁ ଅଲଗା ହୋଇ ଦୂରକୁ ଯିବା ସଙ୍ଗେ ସଙ୍ଗେ ଅନ୍ୟ ଗୋଷ୍ଠୀରୁ ଅଲଗା ହୋଇ ଆସିଥିବା ଲୋକଙ୍କ ସହିତ ଦେଖାହୁଏ ଓ ନୂତନ ସଂପର୍କର ଆରମ୍ଭ ହୁଏ । ଏହିପରି ଭାବରେ ଦୈହିକ ଓ ସାଂସ୍କୃତିକ ମିଳନର ଆରମ୍ଭ । ପରେ ଏହା ଆଦର୍ଶବାଦର ରୂପ ନେଲା ।

ପ୍ରାଚୀନ ଇଜିପ୍ଟର ଆଖନାତନଠାରୁ ଆରମ୍ଭ କରି ଉପନିଷଦ, କନଫୁସିଅସ୍, କାଣ୍ଟ ଓ ଗାନ୍ଧିଜୀଙ୍କ ପର୍ଯ୍ୟନ୍ତ ଏହା ଦୀର୍ଘ ପଥ ଅତିକ୍ରମ କରି ଆସିଛି ଓ ଏହି ସମୟରେ ବିଭିନ୍ନ ପର୍ଯ୍ୟାୟରେ ଆଦର୍ଶ-ମୂଳକ ମିଳନ ସମ୍ଭବ ହୋଇଛି । ସେହିପରି ଉତ୍ପାଦନର କଳାକୌଶଳରେ ଓ ବ୍ୟବହାର ଦ୍ରବ୍ୟରେ ସମାନତାର ଦୀର୍ଘ ତାଲିକା କରିଯାଇ ପାରିବ । ଆଜି ଆମେରିକାର ନାଇଲନ ଯେପରି ସାରା ପୃଥିବୀରେ ବ୍ୟାପିଯାଇଛି,

ଦିନେ ସେହିପରି ଢାକାର ସୂକ୍ଷ୍ମବସ୍ତ୍ର ସାରା ପୃଥିବୀରେ ବ୍ୟାପି ଯାଇଥିଲା । ଜେମ୍ସ ଓ୍ୟାଟ୍ ବସ୍ତ୍ର ବୟନର ଯେଉଁ ଉପାୟ ଉଦ୍ଭାବନ କଲେ, ଆଜି ତାହା ପରିବର୍ଦ୍ଧିତ ଓ ପରିମାର୍ଜିତ ହୋଇ ସମଗ୍ର ପୃଥିବୀରେ ପ୍ରତିଷ୍ଠିତ ହୋଇ ପାରିଛି । ଆଜି ପୃଥିବୀର ସବୁ ଦେଶ ହଲିଉଡ଼ର ପ୍ରଭାବରେ ପ୍ରଭାବିତ ଓ ବୋଧହୁଏ ପୃଥିବୀର ବିଭିନ୍ନ ଦେଶମାନେ ସବୁଠାରୁ କମ୍ ସମୟ ଭିତରେ ତୋପ ଓ ବାରୁଦର ବ୍ୟବହାରକୁ ଗ୍ରହଣକରି ନେଇଥିଲେ ।

ମଟରଗାଡ଼ି, ବେତାର ଓ ଉଡ଼ାଜାହାଜ ଯୋଗୁଁ ଆଜି ଦୂରତା ଆଉ ଦୂରତା ହୋଇ ନାହିଁ, ଏକଥା ସମସ୍ତେ କହନ୍ତି । ସତରେ ଦୂରତା ଭାଙ୍ଗିଛି କି ନାହିଁ, ସେ ବିଷୟରେ କେହି ସନ୍ଦେହ କଲେ ବି ସମସ୍ତେ ଯେ ଏକ ପ୍ରକାର ଆଧୁନିକ ପରିବହନ କୌଶଳ ବ୍ୟବହାର କରୁଛନ୍ତି, ଏଥିରେ ସନ୍ଦେହ ନାହିଁ । ସବୁ ଐତିହାସିକ ପର୍ଯ୍ୟାୟରେ ଏହା ଘଟିଛି; କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ଲୋକେ ଏହାର ବାହକ, ଏକଥା ଯେପରି କେହି ନ ଭାବେ । ସମଗ୍ର ଭାବରେ ମଣିଷ ଜାତିର ଉନ୍ନତିର ଏହା ଅଂଶ । ଯେତେ-ବେଳେ କୌଣସି ନିର୍ଦ୍ଦିଷ୍ଟ ଲୋକେ ଉନ୍ନତି କରିଛନ୍ତି ବା ନୂତନ କଳା କୌଶଳ ଶିଖିଛନ୍ତି, ସେହି ବିଦ୍ୟା ସେମାନେ ଅନ୍ୟ ଅଞ୍ଚଳରେ ପ୍ରଚାର କରିଛନ୍ତି ଓ ଅନ୍ୟାନ୍ୟ ଅଞ୍ଚଳର ବିଦ୍ୟା ନିଜ ଅଞ୍ଚଳକୁ ଆଣିଛନ୍ତି । ଇତିହାସର ଆରମ୍ଭରୁ ଏହିପରି ଘଟିଆସୁଛି ।

ବର୍ତ୍ତମାନ ସାଂସ୍କୃତିକ କ୍ଷେତ୍ରରେ ଗୋଟିଏ ଯୋଡ଼ିଏ ଉଦାହରଣ କଥା ମୁଁ ଚିନ୍ତା କରୁଛି । ଇଣ୍ଡୋନେସିଆରେ ରଂଗେନ୍ ନାମକ ଗୋଟିଏ ନୃତ୍ୟ ଅଛି । ଭାରତର ବଣ ଜଙ୍ଗଲରେ ଭିଲ ପ୍ରଭୃତି ଆଦିବାସୀମାନଙ୍କ ସହିତ ଯେଉଁମାନେ ରହିଛନ୍ତି, ସେମାନଙ୍କର ଆଦିବାସୀ ନୃତ୍ୟ ସଂପର୍କରେ ସମ୍ୟକ ଜ୍ଞାନ ଅଛି । ଆଦିବାସୀମାନେ ନୃତ୍ୟ କରିବା ସମୟରେ ସାମନା-ସାମନି ଦି ଧାଡ଼ି ହୋଇ ପାଖକୁ ଲାଗି ଲାଗି ଆସି ପୁଣି ଦୂରେଇ ଦୂରେଇ ଯାଇଁ ଅଥଚ ପରସ୍ପରକୁ ନଛୁଇଁ ନୃତ୍ୟ କରନ୍ତି । ରଂଗେନ୍ ଜାମୋଦ୍ଦୀ-ପକ ନୃତ୍ୟ, ଏହା ସତ୍ତ୍ୱେ ଏହାକୁ ପରିବାର ସହିତ ଦେଖିହେବ । ଏହି ନୃତ୍ୟ ଆମେରିକା ଗଲା ଓ ଆମେରିକାରେ ଏହାକୁ ବୁଗି ଉଗି କହନ୍ତି । ସେଠାରେ ନାଚିବା ସମୟରେ ଖୁବ୍ ପାଖକୁ ଲାଗିଆସି ପୁଣି ଦୂରେଇ ଯିବାକୁ ହୁଏ । ଏହି ନାଚ ପୁଣି ସିଂଗାପୁରକୁ ଫେରିଆସିଛି ଓ ସେଠାରେ

ଏହାକୁ ଯୋଗେଟ୍ ମଡ଼ର୍ଣ୍ଣ କୁହାଯାଏ । ଏଥିରେ ବିଭିନ୍ନ ଅଙ୍ଗଭଙ୍ଗୀ କରି ପୁରୁଷ ଓ ନାରୀ ପରସ୍ପରର ପାଖକୁ ଆସନ୍ତି ଓ ପୁଣି ଅଲଗା ହୋଇ ଯାଆନ୍ତି ଓ ଏପରି କାମୋଦ୍ଦୀପକ ନୃତ୍ୟ ପୃଥିବୀରେ ବୋଧହୁଏ ଖୁବ୍ କମ୍ ଅଛି । ଭବିଷ୍ୟତରେ ଏହି ନୃତ୍ୟରେ ହୁଏତ ଅନ୍ୟାନ୍ୟ ପ୍ରଭାବ ଲକ୍ଷ୍ୟ କରାଯାଇ ପାରେ ।

ସେହିପରି ବାଲିର ଅଦ୍ଵିତୀୟ ଗାମିଲନ୍ ଅର୍କେଷ୍ଟ୍ରା, ଯେଉଁଠି ଦଶ ବର୍ଷରୁ ସତୁରି ବର୍ଷ ପର୍ଯ୍ୟନ୍ତ ପ୍ରାୟ ୫୦ ଜଣ ଲୋକ କୌଣସି ସଂଗୀତ ତତ୍ତ୍ୱ ବା ପରିଚାଳକଙ୍କର ବିନା ସାହାଯ୍ୟରେ ଏକାଠି ହୋଇ ନା ନା ପ୍ରକାର ପିତଳର ସଂଗୀତଯନ୍ତ୍ର ବଜାନ୍ତି । ଏହି ଗାମିଲନ୍ ଅର୍କେଷ୍ଟ୍ରା ବର୍ତ୍ତମାନ ବାଲିର ବଡ଼ ସହରମାନଙ୍କରେ ହଲିଉଡ୍ ଛବିର ପ୍ରଚାର ପାଇଁ ବ୍ୟବହାର ହେଉଛି । ଏ ବି ସେହି ସାଂସ୍କୃତିକ ପ୍ରଭାବର ଫଳ, ଯଦିଚ ଅନେକେ ଏହାକୁ ନାପସନ୍ଦ କରିପାରନ୍ତି । ଗାମିଲନର ସରବ ସଂଗୀତର ତାଳେ ତାଳେ ବାଲି ଗ୍ରାମ ଅଞ୍ଚଳର ଅର୍ଦ୍ଧନଗ୍ନ ସ୍ତ୍ରୀ ଲୋକମାନେ ଦେହକୁ ଅପରୂପ ଭଙ୍ଗୀରେ ଦୋଳାୟିତ କରି ନୃତ୍ୟ କରନ୍ତି । କିନ୍ତୁ ବାଲିର ସହର ଅଞ୍ଚଳର ସ୍ତ୍ରୀ ଲୋକମାନେ ଅର୍ଦ୍ଧନଗ୍ନ ନୁହନ୍ତି, ସୁସଜ୍ଜିତ ଓ ଏହି ପୋଷାକର ସଜ୍ଜା କ୍ରମଶଃ ସହର ଅଞ୍ଚଳରୁ ଗ୍ରାମ ଅଞ୍ଚଳକୁ ବ୍ୟାପୁଛି । ତେଣୁ ହୁଏତ ଭବିଷ୍ୟତରେ ଯେତେବେଳେ ଆମେରିକାର ସ୍ତ୍ରୀଲୋକମାନେ କାଲିଫର୍ଣ୍ଣିଆର ଉଜ୍ଜ୍ୱଳ ସମୁଦ୍ର ସୈକତରେ ପ୍ରାୟ ନଗ୍ନ ହୋଇ ବିଚରଣ କରିବେ, ସେତେବେଳେ ବାଲିର ପ୍ରକୃତି କୋଳରେ ଲାଳିତ ନଗ୍ନ ରମଣୀମାନେ ନିଜକୁ ପୋଷାକରେ ସଜ୍ଜିତ କରି ସଭ୍ୟ ହେବାକୁ ଚେଷ୍ଟା କରୁଥିବେ । ଇତିହାସର ଆଲୋଚନାରେ ଅନେକେ ହୁଏତ ଏହା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ ବୋଲି ବିଚାରିବେ । କିନ୍ତୁ ବାସ୍ତବରେ ଗୁରୁତ୍ୱପୂର୍ଣ୍ଣ କିଏ ? ବୋଧହୁଏ କେବଳ ମହାନ୍ ଧର୍ମ ପ୍ରଚାରକମାନଙ୍କୁ ଛାଡ଼ିଦେଲେ ଯେତେ ଶାସକ, ସେନାପତି, ରାଜନୀତିଜ୍ଞ ସମସ୍ତଙ୍କୁ ଇତିହାସ ଦିନେ ଭୁଲିଯିବ । କିନ୍ତୁ ଯାହା ରହିବ, ସେ ହେଲା ବ୍ୟାଂକକ୍‌ର ମୁହଁ, ନାରୀ ବା ସାନ୍‌ଫ୍ରାନସିସ୍କୋର ଚୁଇନା ଟାଉନ୍‌ର ମୂର୍ତ୍ତି ଓ ପ୍ୟାରିସ୍‌ରେ ଥିବା ଇଜିପ୍ଟର ସ୍ତମ୍ଭ । ଏହାହିଁ ଇତିହାସର ମୂଳ ବୀଜ । ବିଭିନ୍ନ ଜାତି ଓ ଲୋକେ, ସେମାନଙ୍କର ସଂସ୍କୃତି ଓ ଦେହ ମିଶିବା ଫଳରେ ଯାହା ରହେ, ତାହାହିଁ ଇତିହାସ ।

ତଥାପି ଏହି ପ୍ରକାର ମିଳନର ନିଜସ୍ୱ ସୀମା ଅଛି ଓ ଏ ପର୍ଯ୍ୟନ୍ତ ଏହି ପ୍ରକାର ଉଦ୍ୟମ ବିଶ୍ୱବ୍ୟାପୀ ହୋଇନାହିଁ । ଗ୍ରୀକ୍, ସଂସ୍କୃତ, ଆରାମିକ୍ ବା ଆରବିକ ବିଭିନ୍ନ ସମୟରେ ଯଥେଷ୍ଟ ପ୍ରସାରଲାଭ କରିଛି; କିନ୍ତୁ ପୃଥିବୀର ସବୁଆଡ଼େ ନୁହେଁ । ବହୁ ସଂସ୍କୃତି ପୂର୍ବକୁ ବା ପଶ୍ଚିମକୁ ବ୍ୟାପି ଯାଇଛି ଓ ବହୁ ଲୋକେ ଏହି ସବୁ ସଂସ୍କୃତିଦ୍ୱାରା ପ୍ରଭାବିତ ହୋଇ ପରିଚାଳିତ ହୋଇଛନ୍ତି । କିନ୍ତୁ ସମସ୍ତେ ନୁହନ୍ତି । ତେଣୁ ଏହିପରି ସାଂସ୍କୃତିକ ବା ବୈଦ୍ଧିକ ମିଳନ ସବୁଦିନେ ସୀମିତ ହୋଇ ରହିଥିବ, ଏହା ହୁଏତ ଅନେକ ମନେକରି ପାରନ୍ତି । କିନ୍ତୁ ଏହି ପ୍ରସାର ଯଦି ଯୁଦ୍ଧବିଗ୍ରହ ଓ ଆଦର୍ଶର ପ୍ରାଧାନ୍ୟଦ୍ୱାରା ଜପରି ଅନ୍ୟକୁ କରଗତ କରିବାକୁ ହେବ, ଏହି ମନୋଭାବଦ୍ୱାରା ଚାଳିତ ହୁଏ, ତା'ହେଲେ ବୋଧହୁଏ ଏହା ସୀମିତ ହୋଇ ରହିବ । କିନ୍ତୁ ଏହି ମିଳନ ଯଦି ପାରସ୍ପରିକ ସହାନୁଭୂତି, ଇଚ୍ଛା ଓ ବୁଦ୍ଧିଦ୍ୱାରା ନିୟନ୍ତ୍ରିତ ହୁଏ, ତା'ହେଲେ ଏକ ସୁଷମ ଓ ସଂଗଠିତ ଜୀବନ ସମ୍ଭବ ହୋଇପାରିବ ଓ ତାହା ସମଗ୍ର ପୃଥିବୀରେ ପ୍ରସାରିତ ହେବ ।





# ଆଭ୍ୟନ୍ତରିଣ ସମାନତା

ଜାତି ଜାତି ମଧ୍ୟରେ ପାରସ୍ପରିକ ସଂପର୍କ ଓ ପ୍ରଭାବ ଛଡ଼ା ଜାତିର ପରିସର ଭିତରେ ବି ଏହି ସଂପର୍କ କାର୍ଯ୍ୟକାରୀ ହୁଏ । ଇତିହାସର ଆରମ୍ଭରୁ ସମାଜରେ ଅସମାନତା ରହିଛି; କିନ୍ତୁ ସାମ୍ୟତା ପାଇଁ ଯେଉଁ ଆଗ୍ରହ ସେ ବି ବହୁତ ପୁରୁଣା । ୟୁରୋପର ବିଭିନ୍ନ ଅଞ୍ଚଳରେ ସମାଜ ଭିତରେ ଯେତେ ପରିମାଣରେ ସାମ୍ୟତା ସମ୍ଭବ ହୋଇପାରିଛି, ସେଥିରେ ଯେ କେହି ଆଶ୍ଚର୍ଯ୍ୟ ହେବେ । ସୁଇଡେନ୍‌ର ସାମ୍ୟବାଦୀ ଶାସନରେ ସର୍ବ ନିମ୍ନ ଓ ସର୍ବୋଚ୍ଚ ଆୟର ଆନୁପାତିକ ପ୍ରଭେଦ ହେଉଛି ଏକରୁ କୋଡ଼ିଏ । ସୁଇଡେନ୍‌ର ପ୍ରଧାନମନ୍ତ୍ରୀଙ୍କର ଦରମା ବସ୍ତାର ମେହେନ୍ତରର ସର୍ବନିମ୍ନ ଦରମାର ପାଞ୍ଚ ଗୁଣରୁ କମ୍ । ଘରର ଗୃହକର ବା ଗୃହକର୍ତ୍ତୀର ନିଜର ଅଲଗା ଘର ରହିବା ଉଚିତ । ଏହି ସଂପର୍କରେ ପଶ୍ଚିମ ୟୁରୋପର ଅଧିକାଂଶ ଦେଶରେ ଯେଉଁ ଆଇନ୍ ଅଛି, ସେହିଥିରୁହିଁ ସେ ଅଞ୍ଚଳର ସାମ୍ୟ ମନୋଭାବ ସୂଚିତ । ଏପରି କି ପୁଞ୍ଜିବାଦୀ ଆମେରିକାରେ ଜଣେ ଟ୍ରେନ୍‌ର ଡ୍ରାଇଭର ଓ ରାଜ୍ୟ ସରକାରଙ୍କର ସେକ୍ରେଟେରୀ ଉଭୟଙ୍କର ଦରମା ପ୍ରାୟ ସମାନ । ପଶ୍ଚିମର କଲ୍ୟାଣକାମୀ ରାଷ୍ଟ୍ରର ଧାରଣା ଏହି ସାମ୍ୟ-ମନୋଭାବ ବୃଦ୍ଧିରେ ଯଥେଷ୍ଟ ସାହାଯ୍ୟ କରିଛି ।

ଗୃହହୀନ ନ ପାଉଥିବା ଲୋକଙ୍କପାଇଁ ଜୀବନବୀମା, ଟ୍ରେଂଟପିଲ ଓ ବୁଢ଼ାଙ୍କ ପାଇଁ ପେନ୍‌ସନ୍, ଖାଦ୍ୟ ମୂଲ୍ୟ ସ୍ଥିର ରଖିବା ପାଇଁ ସରକାରୀ ସାହାଯ୍ୟ, ମାଗଣା ଔଷଧ, ମ୍ୟୁନିସିପାଲିଟି ପକ୍ଷରୁ ବାସଗୃହର ସୁଯୋଗ ଓ ପିଲମାନେ ପାଠ ପଢ଼ିବାପାଇଁ ଯଥେଷ୍ଟ

କୃଷିର ବ୍ୟବସ୍ଥାଦ୍ୱାରା ପଶ୍ଚିମ ୟୁରୋପରେ କଲ୍ୟାଣକାମୀ ରାଷ୍ଟ୍ରର ଭିତ୍ତି ସ୍ଥାପିତ ହୋଇଛି ଓ ଏହିପରି ଆହୁରି ଅନ୍ୟାନ୍ୟ ମଙ୍ଗଳକର ବ୍ୟବସ୍ଥାଦ୍ୱାରା ପଶ୍ଚିମ ୟୁରୋପର ନାଗରିକମାନେ ପ୍ରାୟ ଏକ ପ୍ରକାର ସୁଯୋଗ ଓ ସୁବିଧା ଲାଭ କରୁଛନ୍ତି, ଏକଥା ନିଶ୍ଚିତ ଭାବରେ କୁହାଯାଇ ପାରେ । ତେବେ କଲ୍ୟାଣକାମୀ ରାଷ୍ଟ୍ରର ଏହି ଧାରଣା ଖୁବ୍ ନୂଆ ନୁହେଁ । ରୋମ୍ ସାମ୍ରାଜ୍ୟରେ ମଧ୍ୟ ଦେଶର ସବୁ ଲୋକଙ୍କୁ ଯଥେଷ୍ଟ ଖାଦ୍ୟ ପଦାର୍ଥ ଯୋଗେଇ ଦେବାକୁ ଉଦ୍ୟମ ହୋଇଥିଲା । ଆଧୁନିକ କାଳରେ ସେହି ପୁରୁଣା ରୋମକ ଧାରଣାକୁ ମଣିଷ ଆବଶ୍ୟକ କରୁଥିବା ସବୁ ଦିଗରେ ପ୍ରସାରିତ କରିବାକୁ ଚେଷ୍ଟା ହୋଇଛି ଓ ଯେ କେବଳ ସାଧାରଣ ଲୋକଙ୍କୁ ସନ୍ତୁଷ୍ଟ କରିବାର ମନୋଭାବ ରହିଛି, ତା ନୁହେଁ । ଏକ ଉଦାର ଓ ସହାନୁଭୂତିପୂର୍ଣ୍ଣ ମାନସରୁ ଏହି କଲ୍ୟାଣକାମୀ ରାଷ୍ଟ୍ରର ଧାରଣାର ସୃଷ୍ଟି । ଯେକୌଣସି ବର୍ଦ୍ଧିଷ୍ଣୁ ସଭ୍ୟତାରେ ଜାଗ୍ରତ ଜନଶକ୍ତି ଅଧିକରୁ ଅଧିକ ପାଇବାପାଇଁ ଦାବୀ କରେ; ତେଣୁ ଏହି ସମୟରେ ସାମାଜିକ ଚେତନା ପ୍ରାୟ ଉଦାରପନ୍ଥୀ ହୋଇଥାଏ । ସୋଭିଏଟ ରୁଷିଆର ସଂଗଠନରେ ଅନ୍ତର୍ନିହିତ ଜାତିପ୍ରଥା ଯେଉଁ ଦିଗରେ ଯାହା କ୍ଷତି କରିଥାଉ ପଛକେ, ରୁଷିଆରେ ଗଣତନ୍ତ୍ରକସ୍ତା ଓ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଯେଉଁ ସାମ୍ୟତା ସମ୍ଭବ ହୋଇପାରିଛି, ତାହା ଅଦ୍ୱିତୀୟ । ଯଦିଚ ରୁଷିଆରେ ବିଶେଷଜ୍ଞ ତନ୍ତ୍ରସ୍ତା ଓ ବିଶ୍ୱବିଦ୍ୟାଳୟ ଶିକ୍ଷା ସ୍ତରରେ ଯଥେଷ୍ଟ ସଫଳତା ଆସିନାହିଁ ।

ସମାଜର ଜଣେ ଲୋକ ଠିକ୍ ଅନ୍ୟ ଜଣେ ଲୋକପରି ସମାନ ସୁବିଧା ଓ ସୁଯୋଗ ଉପଭୋଗ କରିବା ଉଚିତ୍ । ଏହି ମନୋଭାବ ଆଧୁନିକ ସଭ୍ୟତାର, ବିଶେଷ କରି ଗୋରା ଦେଶମାନଙ୍କରେ ପ୍ରତିଷ୍ଠିତ ହୋଇ ପରିଛି ; ଯଦିଚ ଗୋଟିଏ ଦେଶରୁ ଅନ୍ୟ ଦେଶ ମଧ୍ୟରେ ଏହି ପ୍ରତିଷ୍ଠାର ସଫଳତାରେ ପ୍ରଭେଦ ରହିଛି । ଏହା ସତ୍ତ୍ୱେ ଆଭ୍ୟନ୍ତରୀଣ ସାମାଜିକ ନ୍ୟାୟ ଓ କଲ୍ୟାଣକାମୀ ରାଷ୍ଟ୍ରର ଧାରଣା କେବଳ ଧନୀ ଗୋରା ଦେଶ-ମାନଙ୍କରେ ହିଁ ରହିଛି ଓ ଅନ୍ୟାନ୍ୟ ଦେଶମାନଙ୍କରେ ଏହିପରି କଥାବାର୍ତ୍ତା କେବଳ ଛଳନାପୂର୍ଣ୍ଣ । ସେ ସବୁ ଦେଶର ପରିବ୍ୟାପ୍ତ ଦାରିଦ୍ର୍ୟର ପରି-ବେଶରେ ଜନଶକ୍ତି ସ୍ୱାର୍ଥ ଓ ନିଜର ଦାବୀ ବିଷୟରେ ଅଜ୍ଞ ଓ ସାମାଜିକ

ଚେତନା ପକ୍ଷରେ ମୂଲ୍ୟବାନ ଉଦାର ମନୋଭାବ ନ ଆସିବାହିଁ ସ୍ୱାଭାବିକ। କେବଳ ଜାତିର ସୃଷ୍ଟିଶୀଳ ଶକ୍ତି ପୁନର୍ଜୀବିତ ହୋଇ ନୂତନ ସମାଜର ଭିତ୍ତି ସ୍ଥାପନ କଲେ ଏସବୁ ସମ୍ଭବ। ଜାତିର ସମୃଦ୍ଧି ସହିତ ଅସମାନତା ବିପରୀତ ଅନୁପାତରେ ଯୁକ୍ତ। ଜାତି ସମୃଦ୍ଧ ହେବା ସଙ୍ଗେ ସଙ୍ଗେ ନାଗରିକମାନଙ୍କ ମଧ୍ୟରେ ଥିବା ଅସମାନତା କ୍ରମଶଃ କମିଆସେ। ଦାରିଦ୍ର୍ୟ ଓ ସାମାଜିକ ଅସମାନତା ପରସ୍ପର ସହିତ ଯୁକ୍ତ; କାରଣ ଉଭୟର ମୂଳ ହେଉଛି ଅନୁନ୍ନତ ସଭ୍ୟତା ଓ ଆବଦ୍ଧ ସାମାଜିକ ଚେତନା। ଘୋର ଦାରିଦ୍ର୍ୟର ପରିବେଶରେ ସଚେତ ସାମାଜିକ ଚେତନାର ପରିଣତି ହେଉଛି ତୀବ୍ର ମାନସିକ ବେଦନା ଓ ବୈଷୟିକ କ୍ଷମତା ଦୃଷ୍ଟିରୁ ଏପରି ଚେତନା ବିକଶିତ ହେବା ମଧ୍ୟ ଅତି କଠିନ। ତେଣୁ ଆଭ୍ୟନ୍ତରୀଣ ସାମାଜିକ ନ୍ୟାୟ ଓ ସାମ୍ୟତା, କେବଳ ଯେଉଁ ସଭ୍ୟତା ସେମାନଙ୍କର ସାର୍ବଭୌମ ନିୟନ୍ତ୍ରଣ-ଦକ୍ଷତା ଆଡ଼କୁ ଆଗେଇ ଆସୁଛନ୍ତି ବା ସେହି ଅବସ୍ଥାରେ ଆସି ପହଞ୍ଚି ସାରିଛନ୍ତି, ସେହିଠାରେ ହିଁ ସମ୍ଭବ।

ଆଧୁନିକ କାଳରେ ବଡ଼ ବଡ଼ ରାଜ୍ୟର ବିଭିନ୍ନ ଶ୍ରେଣୀ ମଧ୍ୟରେ ସମାନତା ଆସ୍ତେ ଆସ୍ତେ ବୃଦ୍ଧିଲାଭ କରୁଛି। ଏହି ସମାନତା-ମନୋଭାବ ସହିତ ନିର୍ଦ୍ଦିଷ୍ଟ ରାଜ୍ୟମାନଙ୍କର ସୀମା ସରହଦ ଜଡ଼ିତ; କାରଣ ଏକକାର ଉନ୍ନତ ଜୀବନଯାପନ ପ୍ରଣାଳୀ ବିଶେଷ କରି କେବଳ ଜାତୀୟ ସୀମାର ପରିସର ଭିତରେହିଁ କାର୍ଯ୍ୟକାରୀ ହେଉଛି। ଆଜିକାଲି ୟୁରୋପରେ ଧନୀ ଜମିଦାରଙ୍କ ସ୍ତ୍ରୀ ଓ ସାଧାରଣ ଶ୍ରମିକର ସ୍ତ୍ରୀ ବା ପ୍ରଧାନମନ୍ତ୍ରୀଙ୍କ କନ୍ୟା ଓ ଧୋବଣୀ ଭିତରେ ବାହାରୁ ପ୍ରଭେଦ ବାଛିବା ଆଦୌ ସହଜ ନୁହେଁ। ପାରିସର ରାସ୍ତା ଉପର ଛୋଟ ଦୋକାନରେ ବସି ରାସ୍ତାରେ ଯାଉଥିବା ଶହ ଶହ ଲୋକଙ୍କୁ ଘଣ୍ଟା ଘଣ୍ଟା ଧରି ଦେଖି ଦେଖି ଯେ କୌଣସି ଲୋକ ଆନନ୍ଦ ପାଇପାରେ। କିନ୍ତୁ ସେମାନେ କିଏ ବା କିଏ, କହିବା ଆଦୌ ସହଜ ନୁହେଁ; କାରଣ ସମସ୍ତଙ୍କର ପ୍ରାୟ ଏକ ଢଙ୍ଗର ପୋଷାକ ଓ ସମସ୍ତେ ସମାନ ପରିଷ୍କାର ପରିଚ୍ଛନ୍ନ ଓ ସମାନ ସପ୍ରତିଭ। ଏପରି କି ଭାରତରେ ବି ଧୋବଣୀ ବା ମେହେନ୍ତରାଣୀ ଦେଖିବାକୁ ବେଶ୍ ସୁନ୍ଦର; କିନ୍ତୁ ସେମାନଙ୍କର ପୋଷାକପତ୍ର ଯୋଗୁଁ ଅନ୍ୟମାନଙ୍କଠାରୁ ସେମାନଙ୍କର ପ୍ରଭେଦ ବାରିହୁଏ। ୟୁରୋପରେ ପୋଷାକ ପକ୍ଷରେ ଯଥେଷ୍ଟ

ସମାନତା ଆସି ଯାଇଛି । ଷ୍ଟକ୍‌ହୋଲମ୍ ସହରର ରାସ୍ତାରେ ପୋଷାକ ଦେଖି କାହାକୁ ଏ ମୂଲିଆ ବୋଲି କହିବା ସହଜ ନୁହେଁ; କାରଣ ସେଠାରେ କାମ କରୁଥିବା ସାଧାରଣ ମୂଲିଆ ବି ପରିଷ୍କାର ପୋଷାକରେ ସଜ୍ଜିତ । ୟୁରୋପର ସାମାଜିକ ଓ ଅର୍ଥନୈତିକ ସାମ୍ୟ ଯୋଗୁଁ ସେଠାରେ ଅନ୍ତତଃ ପ୍ରତିଲୋକ ମଣିଷ ପରି ବଂଚି ରହିଛି; ତେଣୁ ଲୋକ ଲୋକ ଭିତରେ ସଂପର୍କ ଯେ କେବଳ ଭାଷା, ସାଂସ୍କୃତିକ ଧାରା ଓ ଜାତି ଜାତି ମିଶ୍ରଣରେ ଦେଖାଯାଏ ତା ନୁହେଁ, ସାମାଜିକ ସାମ୍ୟ ଉପଭୋଗରେ ମଧ୍ୟ ଏହା ସମାନ ସ୍ପଷ୍ଟ ।

ଇତିହାସର ଏକ ନିର୍ଦ୍ଦିଷ୍ଟ ସମୟରେ ତିନିଜଣ ମହାନ୍ ଲୋକ ସେମାନଙ୍କର ବାଣୀ ପ୍ରଚାର କରିଥିଲେ । ସେମାନେ ହେଉଛନ୍ତି ବୁଦ୍ଧ, ସକ୍ରେଟିସ୍ ଓ କନ୍‌ଫୁସିଅସ । କିନ୍ତୁ ଏମାନଙ୍କର ଭକ୍ତ ଓ ଶିଷ୍ୟମାନେ ପରସ୍ପରକୁ ଜାଣିବାରେ ଅନେକ ଶତାବ୍ଦୀ ଲାଗିଗଲା । ଆଜିକାଲି ସେ ସମସ୍ୟା ନାହିଁ । ଆଜି ଯଦି ଏହିପରି ତିନିଜଣ ମହାନ୍ ଲୋକ ମଣିଷର ସମସ୍ୟା ସଂପର୍କରେ ଚିନ୍ତା କରୁଥାନ୍ତି, ସେମାନେ ପରସ୍ପରକୁ ନ ଚିହ୍ନିଲେ ବି ଅନ୍ତତଃ ଚିଠିପତ୍ର ଜରିଆରେ ପରିଚିତ ହୋଇ ପାରିବେ । ତଥାପି ଅସୁବିଧା ରହିଛି । ଯେଉଁ ଦେଶରେ ସବୁଠାରୁ ଅଧିକ କଳ କାରଖାନା ଓ ପରମାଣୁ ବୋମା ଇତ୍ୟାଦି ଅଛି, ସେହି ଦେଶର ଲୋକେ ଯାହା କହିବେ, ତାଙ୍କ କଥା ସମସ୍ତେ ଧ୍ୟାନଦେଇ ଶୁଣିବେ । ଏସବୁ ସତ୍ତ୍ୱେ ଇଚ୍ଛା ଓ ବୁଦ୍ଧି ଥିଲେ ଜାତି ଭିତରେ ଓ ଜାତି ଜାତି ମଧ୍ୟରେ ଦୈହିକ ଓ ସାଂସ୍କୃତିକ ମିଳନ ସମ୍ଭବ ।

ତରୁଣ ବୟସରେ ମୁଁ ଭାବୁଥିଲି ଯେ, ମୋର ଜୀବଦ୍ଦଶାରେ ହୁଏତ ପୃଥିବୀରେ ଅଗଣିତ ବର୍ଣ୍ଣଶଂକର ପୂରିଯିବେ । ଆମେ ସମସ୍ତେ ବର୍ଣ୍ଣଶଂକର । ପ୍ରଭେଦ ଏତିକି, ଆମ ସମସ୍ତଙ୍କର ଐତିହ୍ୟ ଆସିଗଲାଣି ଓ ବହୁ ପୂର୍ବରୁ ଆମ୍ଭମାନଙ୍କର ବର୍ଣ୍ଣଶଂକର ଅବସ୍ଥା ଆସିଥିଲା । ଆଜି କାଲିକାର ବର୍ଣ୍ଣଶଂକରମାନଙ୍କୁ ହୁଏତ ପୁରାତନ ବର୍ଣ୍ଣଶଙ୍କରମାନେ ନାପସନ୍ଦ କରିବେ; କିନ୍ତୁ ଏକଥା ସତ ଯେ, ଆଜି ଜାତି ଜାତି ମଧ୍ୟରେ

ଦୈହିକ, ସାମାଜିକ, ସାଂସ୍କୃତିକ ମିଳନ ହେଲେ ଆତ୍ମାର ମିଳନ ବି ସମ୍ଭବ ହେବ ଓ ସେହି ସୂତ୍ରରୁ ଭବିଷ୍ୟତର ଶାନ୍ତି ଓ ସମୃଦ୍ଧିର ସୁବର୍ଣ୍ଣ ଯୁଗର ସୂଚନା ମିଳିପାରିବ । ତେବେ ଏହି ବର୍ଣ୍ଣଶଂକର ସମ୍ଭବ ହେଉ ବା ନହେଉ, ଆଜି ଅନ୍ୟ ଭାବରେ ଦୈହିକ ଓ ସାଂସ୍କୃତିକ ମିଳନ ହେବାର ସମ୍ଭାବନା ସୂଚିତ ହେଉଛି ଓ ଭବିଷ୍ୟତ ଇତିହାସକୁ ଏହା ନିଶ୍ଚୟ ପ୍ରଭାବିତ କରିବ ।





# ଚଳନ୍ତି ସ୍ୱପ୍ନ

ଆଜିକାଲି ଅନେକ ଧାରଣା ରାଜନୀତି ଦୃଷ୍ଟିରୁ ନିଷ୍ପତ୍ତିମୂଳକ ନ ହେଲେ ବି ବେଶ୍ ପ୍ରଚଳିତ ହେଲଣି ଓ ଭବିଷ୍ୟତ ରାଜନୀତିକୁ ପ୍ରଭାବିତ କରିପାରେ । ଆଜି ହୁଏତ ଜଣେ ଭାରତୀୟ ଆମେରିକା ରାଷ୍ଟ୍ରପତି ନିର୍ବାଚନରେ ଭାଗ ନେଉନାହିଁ ବା ଭୋଟ ଦେଇ ରୁଷିଆର ପ୍ରଧାନମନ୍ତ୍ରୀଙ୍କୁ ବାହାର କରିଦେଇ ପାରିବ ନାହିଁ । ସେ କେବଳ ନିଜ ଦେଶର ଲୋକଙ୍କ ପାଇଁ ଭୋଟ ଦେବ । ସେହିପରି ଆମେରିକା ବା ରୁଷିଆର ଲୋକେ ଭାରତର ପ୍ରଧାନମନ୍ତ୍ରୀଙ୍କ ସପକ୍ଷରେ ବା ବିପକ୍ଷରେ ଭୋଟ ଦେଇପାରିବେ ନାହିଁ; ସେମାନେ କେବଳ ନିଜ ନିଜ ଦେଶର ଲୋକଙ୍କ ପାଇଁ ଭୋଟ ଦେବେ । ବର୍ତ୍ତମାନ ପୃଥିବୀରେ ଗଣତନ୍ତ୍ର ଓ ଗଣତନ୍ତ୍ର ନଥିବା ଦେଶ ରହିଛି । ସେମାନେ ପରସ୍ପର ସହିତ ବାରମ୍ବାର ଯୁଦ୍ଧ କରନ୍ତି ଓ ଏହିସବୁ ଯୁଦ୍ଧ ଫଳରେ ଆମର ଇଚ୍ଛା ଥାଉ ବା ନଥାଉ ଆମର ଭାଗ୍ୟସବୁ ନିଷ୍ପତ୍ତି ହୋଇଯାଏ । ଏହିସବୁ ଯୁଦ୍ଧ ଓ ଶାନ୍ତି ସମ୍ପର୍କରେ ଆମ୍ଭମାନଙ୍କର ମତାମତ ସମ୍ପୂର୍ଣ୍ଣ ଉପେକ୍ଷିତ ଓ ଏହିସବୁ ବ୍ୟାପାରରେ ଯେଉଁ ଲୋକେ ବା ଯେଉଁ ଅଞ୍ଚଳ ଜଡ଼ିତ, ସେମାନଙ୍କ ଉପରେ ଆମ୍ଭମାନଙ୍କର କୌଣସି କର୍ତ୍ତୃତ୍ୱ ନାହିଁ । ପୃଥିବୀର ଅତି ଶକ୍ତିଶାଳୀ ବା ଅତି ଦୁର୍ବଳ ସବୁ ଦେଶର ଲୋକଙ୍କ ପାଇଁ ଏହା ସତ୍ୟ । ସାବାଳକ ଭୋଟ ନିର୍ଦ୍ଦିଷ୍ଟ ସୀମା ଭିତରେ ଆବଦ୍ଧ । ଏହା ଜାତୀୟ ଭୋଟ । ଫଳରେ ଆଜି ଯୁଦ୍ଧ ଓ ଶାନ୍ତିପରି ଗୁରୁତର ସମସ୍ୟାମାନ ପୃଥିବୀର ସବୁଦେଶର ସାବାଳକ ଭୋଟଦାତା ନିଷ୍ପତ୍ତି ନ ହୋଇ ସୀମିତ ଜାତୀୟ ଭୋଟଦାତା ନିଷ୍ପତ୍ତି ହେଉଛି । ବର୍ତ୍ତମାନ ବାରମ୍ବାର ଦାବୀ ହେଉଛି

ଯେ, ଆମେରିକା, ରୁଷିଆ, ଭାରତ ବା ଅନ୍ୟାନ୍ୟ ଦେଶମାନେ କପଟ ଭାବରେ ଶାସିତ ହେବେ ବା ଅନ୍ତତଃ କେତେକ ବିଷୟରେ କପଟ ଭାବରେ ବ୍ୟବହାର କରିବେ, ସେ କଥା ପୃଥିବୀର ସବୁଦେଶର ସବୁ ସାବାଳକ ନାଗରିକଙ୍କର ଭୋଟଦ୍ୱାରା ନିଷ୍ପତ୍ତି ହେବା ଉଚିତ ।

ସାରା ପୃଥିବୀ ପାଇଁ ଗୋଟାଏ ଶାସନ ଯେତେବେଳେ ହେବ, ସେତେବେଳେ ଏହି ପୃଥିବୀ-ସରକାର ହୁଏତ ବର୍ତ୍ତମାନର ଜାତୀୟ ସରକାରମାନେ ଯେତେ ଯେତେ ଦାୟିତ୍ୱ ନେଇଛନ୍ତି, ସେସବୁ କିମ୍ବା ତାର ଅଧିକାଂଶ ବି ନିୟନ୍ତ୍ରିତ କରିପାରିବ ନାହିଁ । କିନ୍ତୁ ବିଭିନ୍ନ ଦାୟିତ୍ୱର ଗୋଟାଏ ସର୍ବନିମ୍ନ ତାଲିକା କରି ସେସବୁ ପୃଥିବୀ-ସରକାରର କର୍ତ୍ତୃତ୍ୱରେ ଛାଡ଼ି ଦିଆଯାଇପାରେ ଓ ସେଥିପାଇଁ ପୃଥିବୀ-ସରକାର ପୃଥିବୀ-ପାର୍ଲାମେଣ୍ଟ ପାଖରେ ଦାୟୀ ରହିବ । ସାବାଳକ ଭୋଟ ପ୍ରଥାରେ ନିର୍ବାଚିତ ଏହି ପୃଥିବୀ-ପାର୍ଲାମେଣ୍ଟର କ୍ଷମତା ସୀମିତ ହେଲେ ବି ଜାତୀୟ ଓ ଆଞ୍ଚଳିକ ବିଷୟରୁ ଏହାର ନିଷ୍ପତ୍ତିମାନ ଖୁବ୍ ଗୁରୁତ୍ୱପୂର୍ଣ୍ଣ ହେବ । ଏହି ପାର୍ଲାମେଣ୍ଟର ଗୋଟିଏ ଉପର ସଭା ହୁଏତ ରହିପାରେ, ଯେଉଁଠି ପୃଥିବୀର ସବୁ ଜାତିମାନେ ସମାନ ଭାବରେ ପ୍ରତିନିଧିତ୍ୱ କରିପାରିବେ କିମ୍ବା ଯଦି ଗୋଟିଏ ଲୋକସଭା ରହେ, ତେବେ ଏହା ଏପରି ଭାବରେ ଗଠିତ ହେବା ଉଚିତ, ଯେପରିକି ପୃଥିବୀର ଜନବହୁଳ ଦେଶମାନଙ୍କର ଏକାଧିପତ୍ୟ କରିବାର ଆଶଙ୍କା ରହିବ ନାହିଁ ଓ ତା ସହିତ କେତେକାଂଶରେ ସମସାମୟିକ ଶକ୍ତି ଓ କ୍ଷମତା ପରିସ୍ଥିତିର ବାସ୍ତବ ରୂପ ଏହି ପାର୍ଲାମେଣ୍ଟରୁ ମିଳିପାରିବ ।

ଆଜିର ସବୁ ସରକାର ଜାତୀୟ ସରକାର ଓ ସେହି ଦୃଷ୍ଟିରୁ ମଣିଷ ଜାତିର ଏକତାର ପ୍ରଧାନ ପ୍ରତିବନ୍ଧକ ଜାତୀୟ ସରକାର ଯେ ଉଠିଯିବ, ତା ନୁହେଁ । ସେସବୁ ରହିବ, କାରଣ ଯଦି ଅସମ୍ଭବ ସମ୍ଭବ ହୁଏ; ଅର୍ଥାତ୍ ପୃଥିବୀ ସରକାର ସବୁ ଜାତୀୟ ସରକାରକୁ ଧ୍ୱଂସ କରିଦିଏ, ତା ହେଲେ ଏପରି ପୃଥିବୀ-ସରକାର ଏକ ବୀଭତ୍ସ ଅତ୍ୟାଚାରୀ ଭାବରେ ଉପସ୍ଥିତ ହେବ । ପୃଥିବୀ-ସରକାର ଅଳ୍ପ କେତୋଟି ଦାୟିତ୍ୱରେ ନିଜକୁ ସୀମିତ କରିବା ଉଚିତ, ଯେପରିକି ଯୁଦ୍ଧ ଓ ଶାନ୍ତି ସମସ୍ୟା, ସାମରିକ ଶକ୍ତି ଓ

ବୈଦେଶିକ ମୀତ ନିୟମ ଓ ଅଳ୍ପ କେତୋଟି ଅର୍ଥନୈତିକ ଯୋଜନା, ଯାହା ଫଳରେ ପୃଥିବୀରେ ସମୃଦ୍ଧ ସ୍ୱାସ୍ଥ୍ୟ ସମ୍ଭବ ହୋଇପାରିବ । ଏହି ପୃଷ୍ଠ ଭୂମିରେ ଜାତୀୟ ସରକାରମାନେ ମଣିଷ ଜାତିକୁ ଆଉ ବଳପୂର୍ବକ ବିଭକ୍ତ କରିବେ ନାହିଁ ଓ ପୃଥିବୀରେ ପ୍ରଥମ ଥର ପାଇଁ ଗଣତନ୍ତ୍ର ସ୍ୱାଧୀନ ଭାବରେ କାର୍ଯ୍ୟକାରୀ ହେବ । ଯେ ପର୍ଯ୍ୟନ୍ତ ବିଭିନ୍ନ ଜାତିର ଦମ୍ଭ, ଲାଳସା ଓ ଅନ୍ୟର କ୍ଷତି କରିବା ମନୋଭାବ ନ ଯାଇଛି, ସେ ପର୍ଯ୍ୟନ୍ତ, ଏପରିକି ଖୁବ୍ ଭଲ ଗଣତାନ୍ତ୍ରିକ ରାଷ୍ଟ୍ରରେ ସାବାଳକ ଭୋଟ ଫମ୍ପଟ ହୋଇ ରହିବା ଉଚିତ ।

ଯେଉଁ ସଭ୍ୟତା ଆଗରେ ସମ୍ମତି ଉପରେ ପ୍ରତିଷ୍ଠିତ ପୃଥିବୀ ସରକାରର ଆଦର୍ଶ ନାହିଁ (ଆଜି ପର୍ଯ୍ୟନ୍ତ କୌଣସି ସରକାରର ସେ ଆଦର୍ଶ ନାହିଁ ), ସେ ସଭ୍ୟତା ସମଗ୍ର ଦକ୍ଷତା ପରିବର୍ତ୍ତେ ନିର୍ଦ୍ଦିଷ୍ଟ ବିଭାଗରେ କେବଳ ସର୍ବୋତ୍ତମ ଦକ୍ଷତା ହାସଲ କରିବାକୁ ଚେଷ୍ଟା କରିବ । ସାବାଳକ ଭୋଟ ସବୁବେଳେ ଅଧିକାଂଶ ସମସ୍ୟାର ସମାଧାନ ପାଇଁ ଜାତୀୟ ଭୋଟ ହୋଇ ରହିବ । କିନ୍ତୁ ଆଜିକାଲି ଅନେକ ସମୟରେ ଯେପରି ସାବାଳକ ଭୋଟ କେବଳ ବ୍ୟକ୍ତି-ଭୋଟ ହୋଇ ନ ରହି କୌଣସି ଗୋଷ୍ଠୀ କାର୍ଯ୍ୟ ପାଇଁ ଗାଁ ବା ମ୍ୟୁନିସିପାଲିଟିର ଗୋଷ୍ଠୀ ଭୋଟ ହୋଇଯାଉଛି, ସେହିପରି ଆଶା ଭବିଷ୍ୟତରେ ଅନ୍ତତଃ ଶାନ୍ତି ଓ ସମୃଦ୍ଧିର ସୀମିତ ପରିବେଶରେ ଏହା ପୃଥିବୀର ଭୋଟ ହୋଇଯିବ । ଲୋକଙ୍କ ପାଇଁ, ଲୋକଙ୍କଦ୍ୱାରା ଓ ଲୋକଙ୍କର ସରକାର—ଏହି ଯେଉଁ ଧାରଣା କେବଳ ସମ୍ଭବ ହେବ, ଯେତେବେଳେ ଗୋଷ୍ଠୀ ପାଇଁ, ଗୋଷ୍ଠୀଦ୍ୱାରା, ଗୋଷ୍ଠୀର ସରକାର ଓ ମଣିଷ ଜାତି ପାଇଁ, ମଣିଷ ଜାତିଦ୍ୱାରା, ମଣିଷ ଜାତିର ସରକାର ଏ ଉଭୟ ଏକାଠି ପାଖାପାଖି ରହିପାରିବ । ଦୈହିକ ଓ ସାଂସ୍କୃତିକ ମିଳନର ସ୍ୱାଭାବିକ ପରିଣତି ସାବାଳକ ପୃଥିବୀ ଭୋଟରେ ହେବ କି ନାହିଁ ଏହା ବିଶ୍ଳେଷଣର ବସ୍ତୁ ନୁହେଁ, ସୃଷ୍ଟିଶୀଳ କାର୍ଯ୍ୟ ଉପରେ ନିର୍ଭର କରେ ।

ପୃଥିବୀ-ସରକାରର କାର୍ଯ୍ୟ ପାଇଁ ଆର୍ଥିକ ସ୍ୱଚ୍ଛଳତା ଆବଶ୍ୟକ । ସେଥିପାଇଁ ଗୋଟିଏ ଆନ୍ତର୍ଜାତିକ ପାଣ୍ଠି ଆବଶ୍ୟକ । ଏହି ପାଣ୍ଠିକୁ

ପ୍ରତି ଦେଶ ନିଜର ଶକ୍ତି ଅନୁଯାୟୀ ଅର୍ଥ ଦେବ ଓ ପ୍ରତିଦେଶ ନିଜର ଆବଶ୍ୟକତା ଅନୁଯାୟୀ ଅର୍ଥ ନେବ । ଏ ଉପାୟ ଯଦି କାର୍ଯ୍ୟକାରୀ ନହୁଏ, ତେବେ ଅନ୍ୟଭାବରେ; ଅର୍ଥାତ୍ ପ୍ରତି ଦେଶ ନିଜର ଆର୍ଥିକ ସ୍ଥିତି ଅନୁପାତରେ ଏହି ପାଣ୍ଠିକୁ ଅର୍ଥ ଦେବ ଓ ଗୋଟିଏ ପୃଥିବୀ-ଉନ୍ନୟନ-ସଂସ୍ଥା ମୂଳଧନ, କଳକବଜା ଓ କାରିଗରୀ କୌଶଳ ବିଭିନ୍ନ ଅନୁନ୍ନତ ଅଞ୍ଚଳର ଆବଶ୍ୟକତା ଅନୁଯାୟୀ ବିତରଣ କରିବ । ଏହି ଅନୁନ୍ନତ ଅଞ୍ଚଳ ଯୁକ୍ତରାଜ୍ୟର ମିଶୋରୀ ଉପତ୍ୟକା ବା ଏସିଆ ଓ ଆଫ୍ରିକାର ଯେ କୌଣସି ଅଞ୍ଚଳ ହୋଇପାରେ । ଯେଉଁ ରାଜ୍ୟମାନେ ଯେତେ ବେଶୀ ଦେଇପାରିବେ, ସେମାନଙ୍କର ସେତେ କମ ଦରକାର ହେବ । କିନ୍ତୁ ଏହି ଦେବା ନେବା ପକ୍ଷପାତିତ୍ତ୍ୱ ଶୂନ୍ୟ । ଆମ୍ଭେମାନେ ଏକ, ଏହି ମନୋଭାବରୁ ହେବା ଉଚିତ । ତେବେ ବର୍ତ୍ତମାନ ବୋଧହୁଏ ପୃଥିବୀ ସରକାର ଓ ପୃଥିବୀ ପାର୍ଲାମେଣ୍ଟ ପରି ଏହି ଜାତୀୟ ଆନ୍ତର୍ଜାତିକ ପାଣ୍ଠିର ଧାରଣା ବେଶୀ ଚିନ୍ତା କରାଯାଇ ନାହିଁ ।

ଏହି ସମ୍ପର୍କରେ ଭାରତୀୟ ଲୋକସଭାରେ ନିକଟରେ ହୋଇଥିବା ଏକ ଆଲୋଚନା ବେଶ୍ କୌତୂହଳଜନକ । କମ୍ୟୁନିଷ୍ଟମାନେ ଆମେରିକାର 'ପାରସ୍ପରିକ ନିରାପତ୍ତା ଆଇନ' ( Mutula Security Act) ଉଦ୍ଧାର କରି ଭାରତୀୟ ନିରାପତ୍ତାର ବିଧି ବିଧାନ ଆମେରିକାର ଅଧୀନ ବୋଲି ପ୍ରମାଣ କରିବାକୁ ଉଦ୍ୟମ କଲାବେଳେ ଭାରତ ସରକାରର ମୁଖପାତ୍ରମାନେ ଆମେରିକା ସାହାଯ୍ୟ ସମ୍ପର୍କରେ ଭାରତୀୟ ଆଇନ ଉଦ୍ଧାର କରି ଭାରତ ଯେ ସ୍ୱାଧୀନ, ଏହା ପ୍ରମାଣ କରିବାକୁ ଚେଷ୍ଟା କଲେ । ଏହା ସହିତ ବ୍ରହ୍ମଦେଶର ପ୍ରଧାନମନ୍ତ୍ରୀ ଉନୁଙ୍କର ଘୋଷଣା ତୁଳନା କରାଯାଇପାରେ । ସେ କହିଥିଲେ, ଯେଉଁ ସର୍ତ୍ତରେ ବ୍ରହ୍ମଦେଶ ଆମେରିକାଠାରୁ ସାହାଯ୍ୟ ପାଉଛି, ଠିକ୍ ସେହି ସର୍ତ୍ତରେ ସେମାନେ ରୁଷିଆ ଓ ଚୀନ୍ ପାଖରୁ ସାହାଯ୍ୟ ପାଇଁ ଆବେଦନ କରିବେ । ଆମର ସହଜ ଆବଶ୍ୟକତା ଯେନ ବୈଦେଶିକ ସାହାଯ୍ୟର ବାହାର ହେବା ଉଚିତ । କିନ୍ତୁ ବର୍ତ୍ତମାନ ସବୁ ପ୍ରକାର ବୈଦେଶିକ ସାହାଯ୍ୟରେ ଦେବାଲୋକର ଦମ୍ଭ, ତୁଚ୍ଛତାଚ୍ଛଲ୍ୟ ଓ ନାନା ପ୍ରକାର ମାନସିକ ଆବେଗ ସହିତ ନେବା ଲୋକର ହୀନମନ୍ୟତା ମିଶି କରି ରହିଛି । ଶାନ୍ତି,

ନିରସ୍ତ୍ରୀକରଣ ଓ ପୃଥିବୀ ଉନ୍ନୟନ ଯୋଜନା ସମ୍ପର୍କରେ କିଛି କିଛି ଆଶାର ସୂଚନା ହୃଏତ ମିଳୁଛି । ମସ୍କୋ ବା ନ୍ୟୁୟର୍କର ନିରାପତ୍ତା ସେମାନଙ୍କର ସାମରିକ ଶକ୍ତିରେ ଯେତେ ନାହିଁ, ତାଠାରୁ ବେଶି ନିର୍ଭର କରୁଛି ସାରା ପୃଥିବୀର ସମୃଦ୍ଧି ଉପରେ । ସେମାନଙ୍କର ଅର୍ଜିତ ସମ୍ପତ୍ତିକୁ ନିରାପଦ ରଖିବା ପାଇଁ ପୃଥିବୀର ଏହି ସବୁ ଗୋରା ପ୍ରଭୁରାଜ୍ୟ ଅନ୍ୟ ଅନୁନ୍ନତ ଦେଶମାନଙ୍କୁ ସେମାନଙ୍କର ସର୍ବନିମ୍ନ ଆବଶ୍ୟକ ଅର୍ଥ ଅର୍ଜନ କରିବାକୁ ସାହାଯ୍ୟ କରିବେ । ୟୁରୋପ ଓ ଆମେରିକାରେ ଅର୍ଥ ସଞ୍ଚିତ ହେଲେ ଏସିଆ ଓ ଆଫ୍ରିକାରେ ସେହି ଅର୍ଥକୁ ସୃଷ୍ଟି କରିବାକୁ ହେବ ।

ବୈଦେଶିକ ସାହାଯ୍ୟ ଦ୍ୱାରା ଯେ ଢେଏ ଓ ଯେ ନିଏ, ଉଭୟଙ୍କୁ ଉପକୃତ ହୃଅନ୍ତି ଏହି ଉପଲବ୍ଧି ହେବା ଉଚିତ । ଦାତାର ଅନୁକମ୍ପା ଓ ଗର୍ବ ଏବଂ ଗ୍ରହୀତାର ଈର୍ଷା ଓ ହୀନମନ୍ୟଭାବ ସବୁ ପ୍ରକାର ସାହାଯ୍ୟ ଯୋଜନାକୁ ବିଷାକ୍ତ କରେ । ଏ ପ୍ରକାର ବୈଦେଶିକ ସାହାଯ୍ୟ ଦ୍ୱାରା ଯୁଦ୍ଧର ନିରୋଧ ସମ୍ଭବ ନୁହେଁ । ଏକମାତ୍ର ପୃଥିବୀ-ଉନ୍ନୟନ-ସଂସ୍ଥା ପରି ଅନୁଷ୍ଠାନ ଯାହାକି ଆଭ୍ୟନ୍ତରୀଣ ସାମାଜିକ ନ୍ୟାୟ ଓ ସାମ୍ୟର ଧାରଣାକୁ ପୃଥିବୀର ରଙ୍ଗମଞ୍ଚରେ ପ୍ରତିଷ୍ଠିତ କରି ଜାଣିଥିବା ସୀମାରେ ଆବଦ୍ଧ ଉନ୍ନତ ଜୀବନଯାପନ ପ୍ରଣାଳୀର ଧାରାକୁ ସବୁ ଜାତି ଓ ଦେଶକୁ ପ୍ରସାରିତ କରିପାରିବ, ତା'ରି ଦ୍ୱାରା ହିଁ ସୁସ୍ଥ, ସମୃଦ୍ଧ ମଣିଷର ସଭ୍ୟତା ସମ୍ଭବ ହୋଇପାରିବ । କିନ୍ତୁ ଏହାର ସଫଳତାର ପଥରେ ବହୁତ ପ୍ରତିବନ୍ଧକ ରହିଛି । ଲୋକେ ନିଜ ଦେଶର ସାମରିକ ଶକ୍ତିର ବୃଦ୍ଧି ପାଇଁ ତ୍ୟାଗ ସ୍ୱୀକାର କରିବାକୁ ଯେତେ ପ୍ରସ୍ତୁତ, ଅନ୍ୟ ଦେଶର ଲୋକେ କିପରି ଭଲରେ ରହିବେ, ସେଥିପାଇଁ ତ୍ୟାଗ କରିବାକୁ ପ୍ରସ୍ତୁତ ନୁହନ୍ତି । ଏହାର କାରଣ ଅନ୍ୟ ଦେଶର ସମୃଦ୍ଧି ଫଳରେ ନିଜ ଦେଶକୁ ଯେଉଁ ନିରାପତ୍ତା ଆସିବ, ସେ ଅପ୍ରତ୍ୟକ୍ଷ ଅଥଚ ନିଜ ଦେଶର ଉନ୍ନତ ସାମରିକ ଶକ୍ତି ପ୍ରତ୍ୟକ୍ଷ ରକ୍ଷା-କବଚ । ପୃଥିବୀ-ଉନ୍ନୟନ-ସଂସ୍ଥା ପରି ଅନୁଷ୍ଠାନ ଦ୍ୱାରା ଯୁଦ୍ଧ ଓ ସଭ୍ୟତାର ଉତ୍ଥାନ ପତନ ରୋକ ହେବ କି ନାହିଁ, ସେ କଥା ବୋଧହୃଏ କେବଳ ଆସନ୍ତା ମହାଯୁଦ୍ଧ ପରେ ଜଣାପିବ ।

ଆଜକାଲି ଧନୀ ଦେଶମାନେ ଅପେକ୍ଷାକୃତ ଅନୁନ୍ନତ ଦେଶମାନଙ୍କୁ ଯେ ଶିଳ୍ପ ସମ୍ବନ୍ଧୀୟ ବିଶେଷଜ୍ଞ ଜ୍ଞାନରେ ସାହାଯ୍ୟ କରୁଛନ୍ତି, ସେଥିରେ ଏହି ମାନବିକ ମିଳନର ଅନ୍ୟ ଗୋଟିଏ ଦିଗ ଦେଖାଯାଏ । କିନ୍ତୁ ଏହି ସାହାଯ୍ୟର ଏପରି ଗୋଟିଏ ଦିଗ ଅଛି, ଯାହା ଖୁବ୍ ଆକାଂକ୍ଷିତ ନୁହେଁ । ଏ ସାହାଯ୍ୟ ସବୁ ବିଭିନ୍ନ ସାମରିକ ଚୁକ୍ତି ଓ ସଙ୍ଗଠନ ସହିତ ଜଡ଼ିତ ଓ ମଣିଷର କଲ୍ୟାଣ ଚିନ୍ତାଠାରୁ ଆତ୍ମରକ୍ଷା ଚିନ୍ତା ଏ ସବୁରେ ବଡ଼ ହୋଇ ଉଠିଛି । ପୁଣି ଏହି ପୃଥିବୀ ବ୍ୟାପୀ ବୈଷୟିକ ସାହାଯ୍ୟର ଯାହା ମୂଳ ଧାରଣା, ଅର୍ଥାତ୍ ୟୁରୋପୀୟ ଶିଳ୍ପଜ୍ଞାନ ପୃଥିବୀର ସର୍ବତ୍ର ଉପଯୋଗୀ, ଏପରି ଭାବିବା ଭୁଲ । ଶିଳ୍ପ ଉନ୍ନତିର ସ୍ତର ସହିତ ଯେପରି ଭାବରେ ନିର୍ଦ୍ଦିଷ୍ଟ ଐତିହାସିକ ଓ ଭୌଗୋଳିକ ପରିସ୍ଥିତିକୁ ଏକାଠି କରି ଦିଆଯାଉଛି, ତା ଠିକ୍ ନୁହେଁ । ପୃଥିବୀର ଅର୍ଥ ନୀତିରେ ବିଜ୍ଞାନର ଯୁକ୍ତିସମ୍ମତ ପ୍ରୟୋଗ ନ ହୋଇ ୟୁରୋପୀୟ କୃଷି ଓ ଶିଳ୍ପକୁ ପୃଥିବୀର ଅନ୍ୟତ୍ର ନ ଭାବି ନ ଚିନ୍ତି ଠିକ୍ ଗୁଡ଼ି ପୋତିଲା ପରି ଆଣି ପୋତି ଦିଆଯାଉଛି । ଫଳରେ ଧନୀ-ଦେଶମାନଙ୍କର ଜ୍ଞାନ ବିତରଣ କରିବାର ଇଚ୍ଛା ଓ ଅନୁନ୍ନତ ଦେଶ-ମାନଙ୍କର ଜ୍ଞାନ ଆହରଣ କରିବାର ଇଚ୍ଛା ଠିକ୍ ସେହି ସ୍ତରରେ ନ ରହି ଠିକ୍ ଲିଦ ଦେଲା ପରି ହେଉଛି ଓ ଏ ସବୁର ପରିଣାମ କ୍ଷତିକାରକ । ଏ ପର୍ଯ୍ୟନ୍ତ ଏପରି କୌଣସି ସଭ୍ୟତାର ସମ୍ଭବ ହୋଇନାହିଁ, ଯାହା ସ୍ୱୟଂ-ସମ୍ପୂର୍ଣ୍ଣ ଓ ଠିକ୍ ପୂର୍ବପରି ପୁନଃ ପ୍ରକାଶ ହେବା ବାଞ୍ଛନୀୟ । ବିଭିନ୍ନ ସଭ୍ୟତାରୁ ବିଭିନ୍ନ କଥା ଶିକ୍ଷା କରିବାର ଅଛି । ଗୋଟିଏ ଦିଗରୁ ଅନ୍ୟ ଦିଗକୁ ସ୍ରୋତ ସବୁବେଳେ ପ୍ରବାହିତ ହେଉଥିବ, ଏପରି ନ ହୋଇ ଦୁଇ ବିପରୀତ ଦିଗକୁ ସ୍ରୋତ ବହିବା ଉଚିତ । କେହି ଦେଲାବାଲା ନାହିଁ କି କେହି ନେଲାବାଲା ନାହିଁ । ଦୁଇଟି ମଣିଷ ଜାତି ପରସ୍ପରର ସମ୍ପର୍କରେ ଆସି ପରସ୍ପରକୁ ଶିକ୍ଷା ଦେବେ ଓ ପରସ୍ପରଠାରୁ ଶିକ୍ଷା କରିବେ । କିନ୍ତୁ ଆଜି ପର୍ଯ୍ୟନ୍ତ ଆଦର୍ଶ ବା ଅର୍ଥନୀତି କ୍ଷେତ୍ରରେ ଏପରି ଦୁଇ ଦିଗରେ ପ୍ରବର୍ଦ୍ଧମାନ ସମ୍ପର୍କର ପରିଚୟ ନାହିଁ । ଜାତିସଂଘ ଓ ବଡ଼ ବଡ଼ ଶକ୍ତି-ମାନଙ୍କର ଶିଳ୍ପ ସାହାଯ୍ୟ ଯୋଜନା କେବଳ ଆମ୍ଭେ ଦେବୁ, ଏହି ମନୋଭାବ ଉପରେ ପ୍ରତିଷ୍ଠିତ । ଏଥିରେ ଗର୍ବ ଓ ଦମ୍ଭ ପ୍ରଚ୍ଛନ୍ନ । କିନ୍ତୁ ବିପରୀତ ଗତି ବୋଧହୁଏ ଆରମ୍ଭ ହୋଇଛି ।

କେତେକ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷ ପୃଥିବୀର ପୁନର୍ଗଠନ ପାଇଁ ଆନ୍ତର୍ଜାତୀୟ ବାହିନୀ କଥା ଚିନ୍ତା କରୁଛନ୍ତି । ପୃଥିବୀର ସବୁ ଦେଶରୁ ପୁରୁଷ ଓ ସ୍ତ୍ରୀ ଉଭୟ ଏହି ବାହିନୀରେ ଯୋଗ ଦେଇ ପାରିବେ ଓ ଆଗରୁ କିଛି ଧାରଣା ନ ରଖି ନିଜ ନିଜର ଘରଠାରୁ ଦୂରେଇ ରହି ଏମାନେ କେବଳ ଦେବୁ ଓ ନେବୁ, ଏହି ମନୋଭାବ ଦ୍ୱାରା ପରିଚାଳିତ ହୋଇ ପରିଶ୍ରମ କରିବେ । କେତେକ ବ୍ୟକ୍ତିବିଶେଷ ଏହିପରି କରିବାକୁ ଆରମ୍ଭ କଲେଣି ଓ ଏହାହିଁ ବୋଧହୁଏ ଭବିଷ୍ୟତର ନୂଆ ରୂପ । ଆନ୍ତର୍ଜାତୀୟ ସୋସିଆଲିଷ୍ଟ ଯୁବ ସଂଗଠନ ପରି କେତେକ ବେସରକାରୀ ସଂସ୍ଥା ଏହିପରି ଧାରଣାକୁ କାର୍ଯ୍ୟକାରୀ କରି ହେବ କି ନା ଚିନ୍ତା କରି ଦେଖୁଛନ୍ତି । ହୁଏତ ଦିନେ ଜାତିସଂଘ ବା ତାର ଉତ୍ତରାଧିକାରୀ ଏହିପରି ବାହିନୀ ତିଆରି କରିବା ପାଇଁ ପ୍ରସ୍ତାବ ନେବ । ଏହାହେଲେ କେବଳ ଯେ ବିଭିନ୍ନ ଶିଳ୍ପଜ୍ଞାନର ସମନ୍ୱୟ ସାଧିତ ହେବ ତା ନୁହେଁ, ମଣିଷର ବହୁ ବିଭିନ୍ନ ଚେଷ୍ଟାର ସମନ୍ୱୟ ସାଧିତ ହୋଇପାରିବ ।

ଉଭୟ ଶିଳ୍ପର ବିକାଶ ଓ ଆତ୍ମାର ବିକାଶ ଉପରେ ମଣିଷର କଲ୍ୟାଣ ନିର୍ଭର କରେ ଓ ଯେଉଁ ସଭ୍ୟତା ସର୍ବୋତ୍ତମ ଦକ୍ଷତା ପରିବର୍ତ୍ତେ ସମଗ୍ର ଦକ୍ଷତାରେ ଆଗ୍ରହୀ, ସେହି ସଭ୍ୟତାହିଁ ଏହି ଉଭୟ ବିକାଶ ପ୍ରତି ଯତ୍ନବାନ୍ ହେବ । ଏସିଆର ସ୍ଥିତଧୀ ବର୍ତ୍ତମାନ ଆଳସ୍ୟରେ ପରିଣତ ହେଲାଣି ଓ ୟୁରୋପର କର୍ମଚଞ୍ଚଳତା କ୍ରମଶଃ ସଂଘର୍ଷରେ ପରିଣତ ହେଉଛି । ଉଭୟ ଏସିଆ ଓ ୟୁରୋପ ପରସ୍ପରର ଏହି ଅବସ୍ଥାରୁ ଶିକ୍ଷା କରିବା ଉଚିତ । ଉଭୟ ଏସିଆ ଓ ୟୁରୋପରେ କ୍ଷୟ ଆରମ୍ଭ ହୋଇଛି, ଯଦିଓ ଏହି କ୍ଷୟର ପ୍ରଣାଳୀ ଉଭୟରେ ଭିନ୍ନ । କିନ୍ତୁ ଯଦି ବିଭିନ୍ନ ସାଂସ୍କୃତିକ ଅଞ୍ଚଳର ଲୋକମାନେ ଏକାଠି ରହି କାମ କରି ପାରନ୍ତି ଓ ପରସ୍ପରକୁ ଭଲ ପାଇ ପାରନ୍ତି, ତା'ହେଲେ ୟୁରୋପୀୟ ଲୋକମାନେ ସେମାନଙ୍କର ସଂଘର୍ଷ ଓ ଏସିଆର ଲୋକମାନେ ସେମାନଙ୍କର ଆଳସ୍ୟ ଛାଡ଼ିବା ହୁଏତ ସମ୍ଭବ ହୋଇପାରେ । ଭିନ୍ନ ଭିନ୍ନ ଲୋକେ ବିନା ଯୁଦ୍ଧ ବିଗ୍ରହରେ ଏହିପରି ଏକାଠି ହେବା ଫଳରେ ବ୍ୟକ୍ତିଗତ ଜୀବନ ବିଶୁଦ୍ଧ ହେବା ସଙ୍ଗେ ସଙ୍ଗେ ଏକ ଶିକ୍ଷଣୀୟ ପରିବେଶ ସୃଷ୍ଟି ହୋଇପାରେ ।

କିନ୍ତୁ ବର୍ତ୍ତମାନର ଗଡ଼ଣ ଓ ଆନ୍ତର୍ଜାତୀୟ ସମ୍ପର୍କର ପୃଷ୍ଠଭୂମିରେ ମିଳନର ଏସବୁ ଉଦ୍ୟମ ଯେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କଲାଣି, ତା ନୁହେଁ । ପୃଥିବୀରେ ବର୍ତ୍ତମାନ ଗୋଟିଏ ପକ୍ଷରେ ଆମେରିକା ବା ରୁଷିଆ

ଓ ଅନ୍ୟ ପକ୍ଷରେ ଭାରତକୁ ବିଗ୍ଚର କରିହେବ । ଆମେରିକାରେ ୧୧ କୋଟି ଟନ୍ ଓ ରୁଷିଆରେ ସାଢ଼େ ୩ କୋଟି ଟନ୍ ଇସ୍ପାତ ବର୍ଷକୁ ଉତ୍ପାଦିତ ହୁଏ ଓ ଆମେରିକାରେ ବର୍ଷକୁ ପ୍ରତିଲୋକ ୨୦୦ରୁ ଊର୍ଦ୍ଧ୍ୱ ଡିମ୍ବ ଓ ୨୦୦ରୁ ଊର୍ଦ୍ଧ୍ୱ ଲିଟର ଦୁଧ ଖାଦ୍ୟ ଭାବରେ ବ୍ୟବହାର କରେ । ଅନ୍ୟ ପକ୍ଷରେ ଭାରତରେ ବର୍ଷକୁ ୧୨ ଲକ୍ଷ ଟନ୍ ଇସ୍ପାତ ଉତ୍ପାଦିତ ହୁଏ ଓ ପ୍ରତିଲୋକ ବର୍ଷକୁ ୩ ଲିଟର ଦୁଧ ଓ ୩ଟି ଡିମ୍ବ ଖାଏ । ଭାରତର ଅବସ୍ଥା ଯାହା ପୃଥିବୀର ଅନ୍ୟ ଅନୁନ୍ନତ ଦେଶମାନଙ୍କର ଅବସ୍ଥା ଅଳ୍ପ ବହୁତେ ସେଇଆ । ଜାତିସଂଘର ସନନ୍ଦରେ ବି ଏହି ଦେଶ ଦେଶ ଭିତରେ ପ୍ରଭେଦର ଧାରଣା ସୂଚିତ । ଜାତିସଂଘର ଅନ୍ତର୍ଭୁକ୍ତ ଦେଶମାନଙ୍କ ଭିତରେ ସ୍ଥିରେଟି ବଡ଼ ବ୍ରାହ୍ମଣ ଜାତି, ଅନ୍ୟମାନେ ଯେପରି ହରିଜନ ଏହି ମନୋଭାବ ।

ଏଠାରେ ଆନ୍ତର୍ଜାତୀୟ ଜାତିପ୍ରଥା ଆଇନ ସମ୍ମତ । ସମାଜର ଅଭ୍ୟନ୍ତରରେ ଥିବା ଜାତିପ୍ରଥା ବିରୁଦ୍ଧରେ ମଣିଷ ବହୁତ ଆନ୍ଦୋଳନ ଓ ଉଦ୍ୟମ କରି ଆସିଛି; କିନ୍ତୁ ଆଶ୍ଚର୍ଯ୍ୟର କଥା, ସମାଜ ବାହାରେ, ଜାତି ଜାତି ମଧ୍ୟରେ, ଆନ୍ତର୍ଜାତୀୟ କ୍ଷେତ୍ରରେ ଥିବା ଜାତି ପ୍ରଥା ବିଷୟରେ ସେ ସଂପୂର୍ଣ୍ଣ ନିସ୍ପୃହ । ମଣିଷ ମନର ଏହି ଅଦ୍ଭୁତ ଏକ ଦେଶ-ଦର୍ଶିତା ଇତିହାସର ଚକକୁ ଆଜିପର୍ଯ୍ୟନ୍ତ ଚାଳିତ କରି ଆସିଛି ଓ ଏହା ଏକ ଘୋର ନୈରାଶ୍ୟଜନକ ଅବସ୍ଥା । ଦେଶ ଦେଶ ମଧ୍ୟରେ ରହିଥିବା ଏହି ସମ୍ପର୍କ ଆନ୍ତର୍ଜାତୀୟ ଆଚରଣ ବ୍ୟବହାରର ନିୟାମକ ହୋଇଛି । ଫଳରେ ନିଜ ଦେଶରେ ଯେଉଁମାନେ ଖୁବ୍ ପାରଙ୍ଗମ ରାଜନୀତିଜ୍ଞ, ଆନ୍ତର୍ଜାତୀୟ କ୍ଷେତ୍ରରେ ସେମାନେ ମହା ଧୂର୍ତ୍ତ ଓ କୌଶଳୀ ଏବଂ ଆନ୍ତର୍ଜାତୀୟ କ୍ଷେତ୍ରରେ ଯେଉଁମାନେ ଭଲ ବୋଲି ସ୍ୱୀକୃତ, ନିଜ ଦେଶରେ ସେମାନେ ଅଯୋଗ୍ୟ ବୋଲି ବିବେଚିତ ହେଉଛନ୍ତି ।

ଏ ଯେ କେବଳ ଅଳ୍ପ କେତେକ ଉଗ୍ର ରାଜନୀତିଜ୍ଞ ଓ ଉଗ୍ର ରାଜନୀତିର ପରିସରରେ ସୀମାବଦ୍ଧ ତା ନୁହେଁ, ବର୍ତ୍ତମାନର ସବୁ ମତ-ବାଦର ରାଜନୀତିରେ ଏହି ଜାତୀୟ ଉଗ୍ରତା ଅନ୍ତର୍ନିହିତ । ଜାତୀୟ ରାଜନୀତିର ମୂଳ ଆନ୍ତର୍ଜାତୀୟ ବିବେକର ବିରୋଧୀ । ଆମ୍ଭେମାନେ ନିଜ ପାଇଁ ଯାହା କରିବା, ସେ ଏପରି ଭାବରେ ସଂଗଠିତ ହୋଇଛୁ ଯେ, ତାହା ପୃଥିବୀର ଅନ୍ୟମାନଙ୍କ ବିରୁଦ୍ଧରେ ନିଶ୍ଚୟ ଯିବ । ଭବିଷ୍ୟତରେ ସବୁପ୍ରକାର ସୀମିତ ଉଦ୍ଦେଶ୍ୟର ଉଗ୍ରତାକୁ ଅତିକ୍ରମ କରି ଆଧୁନିକ ସଭ୍ୟତା ଏକ ବ୍ୟାପକ ମିଳନରେ ସମସ୍ତଙ୍କୁ ଏକତ୍ର କରି ପାରିବ କି ନାହିଁ ତା ଜାଣିବାକୁ ହେଲେ, ବର୍ତ୍ତମାନ ସଭ୍ୟତାର ମୂଳ ଶକ୍ତି ଓ ଉଦ୍ଦେଶ୍ୟକୁ ବିଚାର କରିବା ଉଚିତ ।



୧୦

## ଆଧୁନିକ ସଭ୍ୟତାର ଅର୍ଥ

ମୋର ମନେଅଛି, ଥରେ ମୁଁ ଜଣେ ଆମେରିକାର ଦାର୍ଶନିକଙ୍କୁ ପଚାରିଥିଲି, ଆଧୁନିକ ସଭ୍ୟତାର ଅର୍ଥ କଅଣ ? ସେ ସମୟରେ ମୁଁ ପାରିସରେ ଥାଏ । ମୋର ଆଗରେ ପାରିସ୍‌ର ଦୀର୍ଘ ସୁନ୍ଦର ଅଟ୍ଟାଳିକା ଓ ମୋର ଚାରିପାଖରେ ସୁନ୍ଦର ଓ ସ୍ୱାସ୍ଥ୍ୟବାନ ପାରିସ୍‌ର ଅଧିବାସୀମାନେ ଯିବା ଆସିବା କରୁଥାନ୍ତି । ସେସବୁ ଦେଖି ମୋ ନିଜ ଦେଶ ଓ ଏସିଆ, ଆଫ୍ରିକାର ଅନୁନ୍ନତ ଅଞ୍ଚଳ କଥା ଭାବି ମୋତେ କଷ୍ଟ ଲାଗୁଥାଏ । ସ୍ୱପ୍ନ-ପରି ସେହି ପ୍ରଶ୍ନ ପୁଣି ଆଜି ମନେ ପଡ଼ୁଛି । ଏହି ସଭ୍ୟତାର ମୂଳ ରହସ୍ୟ କଅଣ ? ଏହି ରହସ୍ୟର ମୂଳ କେଉଁଠି ? କେଉଁ ଯୋଗୁଁ ୟୁରୋପ ଓ ଆମେରିକାର ଲୋକମାନେ ଏତେ ଉନ୍ନତ । ପାରିସ୍‌ରେ ଯେଉଁ କାଫେରେ ବସିଥିଲି, ଠିକ୍ ତା ପଛରେ ମାଗଡ଼ାଲିନ୍ ଚର୍ଚ୍ଚ । ଯିଶୁଖ୍ରୀଷ୍ଟ ଓ ମାଗଡ଼ାଲିନ୍ ବେଶ୍ୟା; କିନ୍ତୁ ଯିଶୁ ତାଙ୍କୁ ସ୍ପର୍ଶ କଲାପରେ ସେ ହେଲେ ପରମ ସନ୍ଥ । ଏ କଥା ତ ସମସ୍ତେ ଜାଣନ୍ତି । ମାଗଡ଼ାଲିନ୍‌ଙ୍କ ସମ୍ମାନ ଓ ସ୍ମୃତି ଉଦ୍ଦେଶ୍ୟରେ ସେହି ଚର୍ଚ୍ଚ, ସତେ ଯେପରି ସେ ଘୋଷଣା କରୁଥାଏ ଯେ, ବାସ୍ତବିକ ସନ୍ଥ ଓ ବେଶ୍ୟା ଭିତରେ ପ୍ରଭେଦ କିଛି ନାହିଁ ।

ବନ୍ଧୁ ମୋ ପ୍ରଶ୍ନର ଉତ୍ତରରେ ମାଗଡ଼ାଲିନ୍ ଚର୍ଚ୍ଚକୁ ଦେଖେଇଦେଲେ । ମାଗଡ଼ାଲିନ୍ ୨୦୦୦ ବର୍ଷତଳେ ବଞ୍ଚିଥିଲେ ଓ ମାଗଡ଼ାଲିନ୍‌ଙ୍କର ୧୮୦୦ ବର୍ଷ ପରେ ଠିକ୍ ସେହି ଜାଗାରେ ପାରିସ୍‌ର ସବୁଠାରୁ ସୁନ୍ଦରୀ ବାଳିକାଙ୍କୁ ଯୁକ୍ତି ଓ ବୁଦ୍ଧିର ଅଧିଷ୍ଠାତ୍ରୀ ଦେବୀ ଭାବରେ ପ୍ରତିଷ୍ଠିତ କରାଯାଇଥିଲା । ଫରାସୀ ବିପ୍ଳବୀମାନେ ନାସ୍ତିକ । ସେମାନେ ଧର୍ମ-

ଯାଜକ, ଚର୍ଚ୍ଚ ଓ ଭଗବାନ-ସମସ୍ତଙ୍କୁ ସେମାନଙ୍କର ବିଶ୍ବାସରୁ ବାଦ ଦେଇ-ଥିଲେ; ତେଣୁ ୟୁରୋପୀୟ ସଭ୍ୟତାର ମୂଳତତ୍ତ୍ୱ ହେଲା ମଣିଷର ଗୌରବରେ ଆତ୍ମବିଶ୍ୱାସ ଓ ବିଜ୍ଞାନରେ ବୌଦ୍ଧିକ ବିଶ୍ୱାସ । ୟୁରୋପୀୟ ମାନସ ଏହି ଯୁଗ୍ମ ତତ୍ତ୍ୱର ଅନୁସନ୍ଧାନରେ ୟୁରୋପୀୟ ସଭ୍ୟତାର ରହସ୍ୟ ଉଦ୍‌ଘାଟନ କରିବାକୁ ଚେଷ୍ଟା କରିଛି, କିନ୍ତୁ ଏହି ଯୁଗ୍ମ ତତ୍ତ୍ୱର ଅନ୍ତର୍ନିହିତ ଧର୍ମ ପରସ୍ପରର ବିପରୀତଧର୍ମୀ ଓ ଏମାନେ ପରସ୍ପରକୁ ସମୃଦ୍ଧ କରିବା ପରିବର୍ତ୍ତେ ପ୍ରାୟ ବିନଷ୍ଟ କରନ୍ତି; ତଥାପି ଏକ ସମୟରେ ଉଭୟର ଅନୁସନ୍ଧାନ କରିବା ଓ ଉଭୟର ସଂଘର୍ଷରୁ ଯେଉଁ ଶକ୍ତି ଉତ୍ପାଦିତ ହେଉଛି, ତାକୁ ଅବଧାରଣା କରିବା ଯଥେଷ୍ଟ ତାତ୍ପର୍ଯ୍ୟପୂର୍ଣ୍ଣ । ଆରମ୍ଭରୁ ଯେ ଏହି ଶକ୍ତି ନଷ୍ଟ ହେଲାନାହିଁ ଓ ଏହି ଶକ୍ତି ଫଳରେ ୟୁରୋପୀୟ ସଭ୍ୟତା ଅନେକ ସଫଳତା ହାସଲ କଲା, ସେ କେବଳ ବିଜ୍ଞାନ ପ୍ରତି ୟୁରୋପର ଅତୁଟ ବିଶ୍ୱାସ ଯୋଗୁ ସମ୍ଭବ ହେଲା । କିନ୍ତୁ ସାଧାରଣ ଭାବରେ ବିଜ୍ଞାନ କହିଲେ ଯାହା ବୁଝାଯାଏ, ଏ ଠିକ୍ ତା ନୁହେଁ । ୟୁରୋପୀୟ ଇତିହାସ କ୍ରମରେ ଯେଉଁ ନିର୍ଦ୍ଦିଷ୍ଟ ବିଜ୍ଞାନର ଉଦ୍ଭବ ହେଲା, ଏ ସେଇ । ବିଜ୍ଞାନର ବିଭିନ୍ନ ବ୍ୟାବହାରିକ ପ୍ରୟୋଗ ଇତିହାସର ବିଭିନ୍ନ ନିର୍ଦ୍ଦିଷ୍ଟ ପରିସ୍ଥିତି ସହିତ ଜଡ଼ିତ ଓ ଏହା ଆମ ସମୟର ଦୁର୍ଭାଗ୍ୟ ଯେ, ବୈଜ୍ଞାନିକ ମାନସ ଓ ବିଜ୍ଞାନର ବ୍ୟାବହାରିକ ପ୍ରୟୋଗକୁ ଏକ ବୋଲି ଧରି ନିଆଯାଉଛି । ବିପରୀତ ପ୍ରକୃତି ବିଶିଷ୍ଟ ଏହି ଯୁଗ୍ମତତ୍ତ୍ୱର ଏକତାର ଅନୁସନ୍ଧାନ କରିବା ବୋଧହୁଏ ଆଉ ୟୁରୋପୀୟ ସଭ୍ୟତା ପକ୍ଷରେ ସମ୍ଭବ ନୁହେଁ ।

କିନ୍ତୁ ସଭ୍ୟତାର ଏ ପ୍ରକାର ବିଶ୍ଳେଷଣ କେବଳ ସାମୟିକ ଭାବରେ ସନ୍ତୋଷଜନକ । ଗୌରବ ଓ ସାମ୍ୟତା ପାଇଁ, ପୁଣି ଜୀବନର ଦୈହିକ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଯେଉଁ ଆଗ୍ରହ, ସେ ସବୁ ସଭ୍ୟତାରେ ଦେଖାଯାଏ । ପୁଣି ଜୀବନ କିଅଣ, ଜୀବନର ଅର୍ଥ କିଅଣ, ଏହା ଜାଣିବା ପାଇଁ ସମସ୍ତଙ୍କର ସମାନ ଆଗ୍ରହ । ଶିଳ୍ପ ଓ କୃଷିରେ ବିଜ୍ଞାନର ପ୍ରୟୋଗ, ବିଶେଷ କରି ଏକ ବିସ୍ତୃତବୁଦ୍ଧି ସମ୍ପନ୍ନ ମନୋଭାବ ବର୍ତ୍ତମାନ ସଭ୍ୟତାର ବଡ଼ କଥା । ଆଜିର ସଭ୍ୟତାରେ ଶିଳ୍ପ ଓ କାରିଗରୀ କୌଶଳରେ ପ୍ରାୟ ପ୍ରତିଦିନ ବିପ୍ଳବ ଘଟୁଛି, ଯନ୍ତ୍ରପାତି ବାରମ୍ବାର ବଦଳି ଯାଉଛି ଓ ଉତ୍ପାଦନରେ ମଧ୍ୟ ବୃଦ୍ଧି ହେଉଛି । ବିଶେଷ କରି ଯୁକ୍ତରାଷ୍ଟ୍ର ଆମେରିକା

ଓ ରୁଷିଆ ପରି ଉନ୍ନତ ଦେଶରେ ଏହି ବିପ୍ଳବର ପରିବେଶ ପ୍ରାପ୍ତ ଲାଗି-ରହିଛି । ପୂର୍ବର କୌଣସି ସଭ୍ୟତାରେ ଏପରି ଘଟି ନଥିଲା । ଯନ୍ତ୍ର-ପାତିରେ ପରିବର୍ତ୍ତନ ପ୍ରାପ୍ତହିଁ ହେଉ ନଥିଲା କହିଲେ ଚଳେ । ଭାରତୀୟ କୃଷକର ଲଙ୍ଗଳ ଗତ ୨୦୦୦ ବର୍ଷ ଧରି ଠିକ୍ ସେହିପରି ରହିଛି । କିନ୍ତୁ ଗତ ୩୦୦ ବର୍ଷରେ ପଶ୍ଚିମ ୟୁରୋପରେ ଯନ୍ତ୍ରପାତି ଯେ ବାରମ୍ବାର ପରିବର୍ତ୍ତିତ ହୋଇଛି, କେବଳ ତା ନୁହେଁ, ବହୁ ସଂଖ୍ୟାରେ ବୃଦ୍ଧି ଲାଭ କରିଛି ଓ କ୍ରମଶଃ ଉନ୍ନତତର ହୋଇଛି । ବର୍ତ୍ତମାନର ସଭ୍ୟତାର ଏହି ବିପ୍ଳବାତ୍ମକ ଶିଳ୍ପ କୌଶଳ ମୂଳରେ ଶିଳ୍ପ ଓ କୃଷିରେ ବିଜ୍ଞାନର ନିର୍ଦ୍ଦିଷ୍ଟ ବ୍ୟାବହାରିକ ପ୍ରୟୋଗ ନିହିତ । ବିଜ୍ଞାନର ଏହି ବ୍ୟବହାର ଫଳରେ ବଡ଼ ବଡ଼ କଳକାରଖାନା ବଢ଼ିଛି, ପୁଞ୍ଜି ଏକଜ ହୋଇ ଶ୍ରମିକ ଅନୁପାତରେ ଯଥେଷ୍ଟ ବୃଦ୍ଧି ଲାଭ କରିଛି ଓ ଗଣ-ଉତ୍ପାଦନ ସମ୍ଭବ ହୋଇଛି ।

ସମଗ୍ର ଭାବରେ ଜାତୀୟ ଉତ୍ପାଦନର ବୃଦ୍ଧି ଓ ବ୍ୟକ୍ତିଗତ ପର୍ଯ୍ୟାୟରେ ଜୀବନଯାପନ ପ୍ରଣାଳୀରେ ଉନ୍ନତି ବର୍ତ୍ତମାନର ଏହି ବିଜ୍ଞାନ-ଭିତ୍ତିକ ସଭ୍ୟତାର ପ୍ରଧାନ ଉଦ୍ଦେଶ୍ୟ ଓ ଏ ସଭ୍ୟତାର ସବୁ କାର୍ଯ୍ୟଦକ୍ଷ ଶାସକଗୋଷ୍ଠୀ ଏହି ଉଦ୍ଦେଶ୍ୟରେ ମୁଖ୍ୟତଃ ପ୍ରଣୋଦିତ । ବର୍ତ୍ତମାନ ପ୍ରତି ବ୍ୟକ୍ତି ପାଇଁ ଜୀବନର ଲକ୍ଷ୍ୟ ବା ଉଦ୍ଦେଶ୍ୟ ହେଉଛି ଏକ ସୁନ୍ଦର ସ୍ୱଚ୍ଛଳ ବାସଗୃହ ଓ ପରିବାର । ଅତୀତର ସଭ୍ୟତାରେ ପରିବାର ଶାନ୍ତି ଓ ସଂଗଠନର କେନ୍ଦ୍ରସ୍ଥଳ ଥିଲା; କିନ୍ତୁ ଆଜିପରି ଏତେ ସରଳ ଓ ଜାଗ୍ରତ ନଥିଲା । ଏହି ପରିବାର ଚିନ୍ତାରେ ଆଧୁନିକ ବ୍ୟକ୍ତି ନିଜର ଅର୍ଥନୈତିକ ଉନ୍ନତି ପାଇଁ ଚେଷ୍ଟା କରୁଛି ଓ ନିଜର ସ୍ତ୍ରୀ ଓ ପିଲାଙ୍କ ପାଇଁ ସୁନ୍ଦର ବାସଗୃହ କଥା ଭାବୁଛି । ଫଳରେ ଜାତୀୟ ଉତ୍ପାଦନ ବୃଦ୍ଧିର ସାମୂହିକ ଉଦ୍ଦେଶ୍ୟ ଓ ଉନ୍ନତ ଜୀବନଯାପନ ପାଇଁ ବ୍ୟକ୍ତିଗତ ଉଦ୍ଦେଶ୍ୟ ଉଭୟ ପରିବାର ଚିନ୍ତା ସହିତ ଜଡ଼ିତ । ଆଜିର ଶିଳ୍ପ କୌଶଳର ବିପ୍ଳବ ମୂଳରେ ଯେଉଁ ଆବେଗ ଓ ଆଗ୍ରହ ନିହିତ, ତାର ମୂଳ ହେଉଛି ପରିବାର ପାଇଁ ଅଭିଳାଷ । ଆମେରିକା ଓ ରୁଷିଆ ଉଭୟଙ୍କର ଅଭିଳାଷ ଏହି ଦିଗରେ ସମାନ, ଯଦିଓ ଉଭୟଙ୍କର ସାମାଜିକ ଗଠଣରେ ଯଥେଷ୍ଟ ବିଭିନ୍ନତା ରହିଛି ।

ପୂର୍ବବର୍ତ୍ତୀ ସଭ୍ୟତାମାନଙ୍କରେ ମଣିଷର ସ୍ଥିତିକୁ ଆଜିର ସଭ୍ୟତାରେ ମଣିଷର ସ୍ଥିତି ସହିତ ତୁଳନା କଲେ ମନେହୁଏ, ଆଗେ ବୋଧହୁଏ ମଣିଷର ଜୀବନ ଏତେ ଜଟିଳ ନ ଥିଲା । ଆଜି ମଣିଷର ମାନସିକ ଜଟିଳତା ସବୁ ଦେଶରେ ସମାନ । ଏ ଦିଗରୁ ପୁଞ୍ଜିବାଦୀ ଆମେରିକା ବା ସାମ୍ୟବାଦୀ ରୁଷିଆ ଏମାନଙ୍କ ମଧ୍ୟରେ ପ୍ରାୟ କିଛି ଫରକ୍ ନାହିଁ ।

କେବଳ ସେତିକି ନୁହେଁ । ଜାଣିପୁ ଅର୍ଥପୀଡ଼ ଓ ଜଟିଳ ବ୍ୟକ୍ତିଗତ ଜୀବନର ଧାରଣା ସହିତ ଆଧୁନିକ ମଣିଷର ଆଉ କେତେକ ଇଚ୍ଛା ବି ରହିଛି । ଯେପରିକି ବିଶ୍ୱଶାନ୍ତି ଓ ସମାନତା ପାଇଁ ଏକ ଅସ୍ପଷ୍ଟ ଆଗ୍ରହ । ଆଗେ ବି ଲୋକଙ୍କର ଏହିପରି ଆଗ୍ରହ ଥିଲା ଓ ଇତିହାସରେ ଏହାର ନିଦର୍ଶନ ରହିଛି । କିନ୍ତୁ ଆଧୁନିକ ସଭ୍ୟତାରେ ବୋଧହୁଏ ପ୍ରଥମଥର ପାଇଁ ଏହି ଆଗ୍ରହ ଓ ଉତ୍ସାହର ଏକ ମୋଟାମୋଟି ଯୁକ୍ତିସମ୍ମତ ଭିତ୍ତି ଗଢ଼ିଉଠିଛି । ଉଭୟ ପୁଞ୍ଜିବାଦ ଓ ସାମ୍ୟବାଦ ଏକ ସୁବର୍ଣ୍ଣଯୁଗର ଚିନ୍ତା କରିଛନ୍ତି ଓ କରୁଛନ୍ତି ବି । ଯନ୍ତ୍ର ଓ ଶିଳ୍ପ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ମଣିଷର ଜୀବନଯାପନ ପ୍ରଣାଳୀର ଉନ୍ନତି ହେବ ଓ ଜାଣିପୁ ଆୟୁ ବୃଦ୍ଧି ପାଇବ । ସେଥି ସଙ୍ଗେ ସଙ୍ଗେ ବିଭିନ୍ନ ଦେଶ ପରସ୍ପର ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେବେ ଓ ପୃଥିବୀରୁ ଯୁଦ୍ଧ ବିଗ୍ରହ ଲୋପ ପାଇବ । ଏହାହିଁ ସୁବର୍ଣ୍ଣଯୁଗର ମୋଟାମୋଟି ଧାରଣା । ଗତ ଦୁଇଶହ ବର୍ଷରେ ୟୁରୋପୀୟ ଲୋକମାନଙ୍କର ଜୀବନଯାପନର ମାନ ଖୁବ୍ ଉନ୍ନତି କରିଛି । ତେଣୁ ଜାଣିପୁ କ୍ଷେତ୍ରରେ ୟୁରୋପୀୟ ସମାଜ ଯେ ସାମାଜିକ ଓ ଅର୍ଥନୈତିକ ସମାନତା ଆଡ଼କୁ ଗତି କରୁଛି ଏପରି ଧାରଣା ହେବା ସ୍ୱାଭାବିକ ।

ଏହି ଧାରଣାରୁ କାଳକ୍ରମେ ସାରା ପୃଥିବୀରେ ଯେ ସମାନତା ଆସିବ, ଏହାହିଁ ଲୋକେ ବିଶ୍ୱାସ କଲେ । ଯନ୍ତ୍ର ଓ ଶିଳ୍ପର ବୃଦ୍ଧି ଓ ସାରା ପୃଥିବୀରେ କୌଣସି କଟକଣା ନ ଥିବା ଗୋଟିଏ ମାର୍କେଟ ଦିଗକୁ ଆଧୁନିକ ସଭ୍ୟତାର ଅଗ୍ରଗତି ଫଳରେ ଔପନିବେଶିକ ଅଞ୍ଚଳରୁ ବି ପଛୁଆ ଅର୍ଥପୀଡ଼ ଲୋପ ପାଇବ ଏହାହିଁ ମନେ ହେଲା । ଏହାଦ୍ୱାରା ସାରା

ପୃଥିବୀ ଉପକୃତ ହେବ, ଏ ଧାରଣା ବି ଅନେକଙ୍କର ହେଲା । ତେଣୁ ଆଧୁନିକ ସଭ୍ୟତାର କେତୋଟି ମୂଳକଥା ହେଲା, ୧—ଶିଳ୍ପ ଓ କୃଷି-କ୍ଷେତ୍ରରେ ବିଜ୍ଞାନର ବିପ୍ଳବାତ୍ମକ ପ୍ରୟୋଗ ସଙ୍ଗେ ସଙ୍ଗେ ଅଧିକରୁ ଅଧିକ ପୁଞ୍ଜିର ବିନିଯୋଗ, ୨—ସାମଗ୍ରିକ ଜାତୀୟ ଉତ୍ପାଦନ ସହିତ ବ୍ୟକ୍ତିଗତ ଜୀବନଯାପନ ମାନର ଉନ୍ନତି ଓ ୩—ସମଗ୍ର ପୃଥିବୀରେ ଏକ ମୋଟା-ମୋଟି ଯୁକ୍ତିସମ୍ମତ ସାମାଜିକ ସମାନତା ଓ ଶାନ୍ତି ପାଇଁ ଇଚ୍ଛା ।

କିନ୍ତୁ ଏ ସଭ୍ୟତା ତାର ଶେଷ ସୀମାରେ ଆସି ପହଞ୍ଚିଲାଣି । ସାରା ପୃଥିବୀରେ ବିସ୍ତାର ଲାଭ କରିବାର କ୍ଷମତା ଏହାର ଆଉ ନାହିଁ । ଏ ଦୃଷ୍ଟିରୁ ପୂର୍ବବର୍ତ୍ତୀ ସଭ୍ୟତାମାନଙ୍କ ତୁଳନାରେ ଏହାର ଯେ ଅଧିକ ଅନ୍ତର୍ନିହିତ ଶକ୍ତି ଥିଲା, ତା ବୋଧହୁଏ ନୁହେଁ । ଏହି ସଭ୍ୟତା ସମ୍ପର୍କରେ ଏକ ବିଶ୍ୱ ବ୍ୟାପକତାର ଧାରଣା ଯାହା ଅନେକ ପ୍ରଥମେ ବିଶ୍ୱାସ କରୁଥିଲେ, ସେ କେବଳ ଆଶାରେହିଁ ରହିଯାଇଛି । ୟୁରୋପରେ ଶିଳ୍ପ-ବିପ୍ଳବ ଓ ତା ପରେ ପରେ ଯାହାସବୁ ଘଟିଗଲା, ସେସବୁ କେବଳ ଅଦ୍ୱିତୀୟ ଐତିହାସିକ ପରିସ୍ଥିତି ଭାବରେ ବିଚାର କରାଯାଇପାରେ । ସେ ସବୁ ଯେ ପୁଣି ଥରେ ଏସିଆ ବା ଆଫ୍ରିକାରେ ଘଟିବ, ଏପରି ଆଶା କରିବା ଠିକ୍ ନୁହେଁ । ଏସିଆରେ ଜମି କମ, ଲୋକ ବେଶି ଓ ଯାନ୍ତ୍ରିକ ଉପକରଣ ଅଳ୍ପ । ତେଣୁ ଏଠାରେ ଗଣ-ଉତ୍ପାଦନର କୌଶଳ ସଫଳତାର ସହିତ ପ୍ରୟୋଗ କରାଯାଇପାରିବାର ସମ୍ଭାବନା କମ୍ । ଭାରତର ଲୋକସଂଖ୍ୟା ପ୍ରତି ବର୍ଗ ମାଇଲରେ ୩୦୦ରୁ ଅଧିକ; କିନ୍ତୁ ରୁଷିଆରେ ପ୍ରତି ବର୍ଗ ମାଇଲରେ ୨୦ରୁ କମ । ରୁଷିଆର ଉଦାହରଣ ଦେଇ କମ୍ୟୁନିଷ୍ଟ ଢଙ୍ଗରେ ଖାଦ୍ୟ ସମସ୍ୟାର ସମାଧାନ କଥା ଅନେକ ଆଡ଼େ କୁହାଯାଏ । କିନ୍ତୁ ଏ କେବଳ କଥାର କଥା । କାରଣ ରୁଷିଆର ୨୦ ଜଣଙ୍କ ଜାଗାରେ ଭାରତର ୩୦୦ ଲୋକଙ୍କର କଥା ଆମେ ଭୁଲିଯାଉ ।

ସବୁ ସମୟରେ ରାଜନୈତିକ ବା ଅର୍ଥନୈତିକ ଆଦର୍ଶ ନିର୍ଦ୍ଦିଷ୍ଟ ଐତିହାସିକ ପରିସ୍ଥିତି ସହିତ ଖାପ ଖାଇବା ଉଚିତ । ଏହା ନ ହେଲେ ଯେ କୌଣସି 'ବାଦ' ହେଉନା କାହିଁକି କେବଳ ବିଚାରବିଭ୍ରାଟ ହିଁ ସାର

ହେବ ଓ ପରିଣାମ ଅତି ଦୁଃଖଦାୟକ ହେବ । ୟୁରୋପୀୟ ସଭ୍ୟତା ସମଗ୍ର ପୃଥିବୀକୁ ଶାସନ କରୁଥିବାରୁ ଆଧୁନିକ ଯନ୍ତ୍ର ଓ ଶିଳ୍ପର ପ୍ରତିଷ୍ଠା ସହଜ ହେଲା । ବର୍ତ୍ତମାନ ସେ ଅବସ୍ଥା ଆଉ ନାହିଁ । ଉଦାହରଣ ସ୍ୱରୂପ ୟୁରୋପୀୟ ଶିଳ୍ପର ଗୋଟିଏ ମୂଳ ପ୍ରଣାଳୀ ଯାହାକୁ ବେସିମର ପ୍ରଣାଳୀ କୁହାଯାଏ, କେବଳ ସୁଏଜ କେନାଲ ଖୋଳାହେବା ଦ୍ୱାରା ସମ୍ଭବ ହୋଇପାରିଲା । ପୁଣି ଅନ୍ୟ ପକ୍ଷରେ ଭାରତୀୟ କୃଷିର କେତେକ ଅଂଶ ବ୍ୟବସାୟ ଦିଗରୁ ପରିଚାଳିତ ହେବାରୁ ସୁଏଜ କେନାଲ ଏକ ଲାଭ-ଜନକ ସଂସ୍ଥାରେ ପରିଣତ ହେଲା । ସାମ୍ରାଜ୍ୟ ଓ ଉପନିବେଶର ସମ୍ପର୍କରେ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ପଶ୍ଚିମ ୟୁରୋପର ଯନ୍ତ୍ର ଓ ଶିଳ୍ପ ପରିସ୍ଥିତିରେ ପରିବର୍ତ୍ତନ ହୋଇ ଅଧିକରୁ ଅଧିକ ପୁଞ୍ଜିର ବିନିଯୋଗ ହୋଇଛି । ତେଣୁ ଆଧୁନିକ ୟୁରୋପର ଯନ୍ତ୍ର ଓ ଶିଳ୍ପ ସଭ୍ୟତାର ମୂଳ ସାମ୍ରାଜ୍ୟବାଦରେ ନିହିତ ଓ ଗ୍ରହ ଗ୍ରହାନ୍ତରରେ ଉପନିବେଶର ଆବିଷ୍କାର ନ ହେଲା ପର୍ଯ୍ୟନ୍ତ ଏହି ସଭ୍ୟତା ପୃଥିବୀରେ ପ୍ରସାର ଲାଭ କରିପାରିବ ନାହିଁ ।

ଏପରି କି ମୂଳ ଦେଶମାନଙ୍କରେ ବି ଆଧୁନିକ ସଭ୍ୟତାର ଅଭିବୃଦ୍ଧି ଶେଷ ସୀମାକୁ ଆସିଗଲାଣି । ୟୁରୋପର ଲୋକମାନେ ନିଜର ଜୀବନଯାପନର ମାନ ଉନ୍ନତ କରିବାକୁ ଇଚ୍ଛା କଲେ ବି କରିପାରୁ ନାହାନ୍ତି । ଗତ ୪୦ ବର୍ଷ ହେଲା ଫ୍ରାନ୍ସରେ କୌଣସି ଉନ୍ନତି ହୋଇ ନାହିଁ, ବିଲାତରେ ବି ପ୍ରାୟ ଗଲା ୨୦ ବର୍ଷ ହେଲା ଜୀବନଯାପନର ମାନ ସହିତ ତାଳ ରଖି ଉତ୍ପାଦନର ବୃଦ୍ଧି ହୋଇ ନାହିଁ । ତେଣୁ ଆଧୁନିକ ସଭ୍ୟତାର ଶ୍ରେଷ୍ଠ ପ୍ରତୀକ ଭାବରେ ଯେଉଁ ଅଞ୍ଚଳକୁ ଯେତେ ଗର୍ବ କରାଯାଏ, ସେହି ପଶ୍ଚିମ ୟୁରୋପର ଆଜି ଏହି ଅବସ୍ଥା । ପ୍ରତିଦ୍ୱନ୍ଦ୍ୱିତାରେ ଏହି ଅଞ୍ଚଳ ପଛେଇ ଯାଇଛି । ଗଲା ଦୁଇଶହ ବର୍ଷ ହେଲା ଏସିଆ ଏହି ଅଞ୍ଚଳକୁ ଯେପରି ଭାବରେ ଦେଖି ଆସିଛି, ବର୍ତ୍ତମାନ ଆମେରିକା ତୁଳନାରେ ପଶ୍ଚିମ ୟୁରୋପ ନିଜକୁ ସେହିପରି ଭାବିବାକୁ ଆରମ୍ଭ କରିଛି । ଆଧୁନିକ ସଭ୍ୟତା ତାର ପ୍ରଧାନ ଅଞ୍ଚଳରେ ଉନ୍ନତିର ଶେଷ ସୀମାକୁ ଆସିଯିବାର କାରଣ ହେଉଛି, ଯନ୍ତ୍ର ଓ ଶିଳ୍ପର ବିପ୍ଳବାତ୍ମକ ଅଭିବୃଦ୍ଧି ଆଉ ସମ୍ଭବ ନୁହେଁ, ତା ସହିତ ବ୍ୟବହାର ଉପଯୋଗୀ ଜାତୀୟ ଉତ୍ପାଦନର ଆଉ ବୃଦ୍ଧି ହେଉ

ନାହିଁ ଓ ଲୋକମାନେ ଜୀବନଯାପନର ମାନ ବୃଦ୍ଧି କରିବା ପାଇଁ ଯେତେ ଆଗ୍ରହୀ ଥିଲେ ବି ସେମାନଙ୍କର ସବୁ ଚେଷ୍ଟା ବର୍ତ୍ତମାନ ଯାହା ଅଛି ତାକୁ ହିଁ ଠିକ୍ ରଖିବାରେ ବ୍ୟସ୍ତ ହେଉଛି, ଏପରିକି ଆବଶ୍ୟକ ସ୍ଥଳେ ଖର୍ଚ୍ଚ କାଟି କରି ବା ଅଧିକ ପରିଶ୍ରମ କରି ଏହା କରିବାକୁ ପଡ଼ୁଛି ।

ଆଧୁନିକ ସଭ୍ୟତାର ଗୋରା ଲୋକମାନେ ଯେଉଁ ପରିମାଣରେ ସାମାଜିକ ଓ ଅର୍ଥନୈତିକ ସମତା ଉପଭୋଗ କରୁଛନ୍ତି, ପୂର୍ବବର୍ତ୍ତୀ ସଭ୍ୟତା-ମାନଙ୍କରେ ତାହା କଳ୍ପନାତୀତ ଥିଲା । ଏହା ସତ୍ତ୍ୱେ ମୂଳ ସ୍ରୋତ ଯେ ଶୁଖି ଆସିଲାଣି, ଏଥିରେ ସନ୍ଦେହ ନାହିଁ । ଏକ ସମୟରେ ବ୍ୟକ୍ତିର ଗୌରବରେ ଏହି ସଭ୍ୟତା ଝଂକୃତ ହୋଇ ଉଠିଥିଲା । ବର୍ତ୍ତମାନ ବ୍ୟକ୍ତି କହିଲେ କେବଳ ଗୋଟିଏ ସଂଖ୍ୟା ବା କୌଣସି ସଂସ୍ଥା ବା ଗୋଷ୍ଠୀର ଅଂଶ । ଯୁରୋପରେ ବ୍ୟକ୍ତିର ଆଉ ନିଜସ୍ୱ ଗୌରବ ପ୍ରାପ୍ୟ ନାହିଁ କହିଲେ ଚଳେ । କେବଳ ଜେଲଖାନା ଭିତରେ କଏଦୀ ହୋଇ ଥିଲାବେଳେ ତାକୁ ଯେ ଗୋଟାଏ ନମ୍ବର ବା ସଂଖ୍ୟା ଦିଆଯାଏ ତା ନୁହେଁ, ପ୍ରତିଦିନିଆ ଜୀବନରେ ସବୁ କାମରେ ତାର ସଂଖ୍ୟା ନିର୍ଦ୍ଦିଷ୍ଟ । ତେଣୁ ବ୍ୟକ୍ତିର ଗୌରବରୁ ଆରମ୍ଭ ହୋଇ ଏହି ସଭ୍ୟତାର ଚକ ବର୍ତ୍ତମାନ ପୁରା ବୁଲି ଆସିଲାଣି ଓ ଆଜି ଗୋଷ୍ଠୀର ଯନ୍ତ୍ରରେ ବ୍ୟକ୍ତି କେବଳ ଏକ ସାମାନ୍ୟ ଅଂଶ ମାତ୍ର । ବୋଧହୁଏ ସାମାଜିକ ଓ ଅର୍ଥନୈତିକ ସମତାର ଅନୁସନ୍ଧାନ କରି ପ୍ରତିଷ୍ଠା କରୁ କରୁ ଆଧୁନିକ ସଭ୍ୟତା ଆଧ୍ୟାତ୍ମିକ ସମତା କଥା ଭୁଲିଗଲା ଓ ସେଥିଯୋଗୁ ଏହି ସଭ୍ୟତା ଆଜି ନିଜ ଭାରରେ ନିଜେ ଭାଙ୍ଗି ଯାଉଛି ।

ଠିକ୍ ଏହାର ବିପରୀତ ପରିସ୍ଥିତି ଅତୀତର କେତେକ ସଭ୍ୟତାରେ ଲକ୍ଷ୍ୟ କରାଯାଇପାରେ । ସେ ସବୁ ସଭ୍ୟତାରେ ସାମାଜିକ ଓ ଅର୍ଥନୈତିକ ସମତାକୁ ଉପେକ୍ଷା କରି ଆଧ୍ୟାତ୍ମିକ ସମତାର ଏତେ ବେଶୀ ଅନୁଶୀଳନ, ଚର୍ଚ୍ଚା ଓ ପ୍ରତିଷ୍ଠା ହେଲା ଯେ, ପରିଣାମରେ ସାମାଜିକ ଓ ଅର୍ଥନୈତିକ ବୈଷମ୍ୟର ଆଧିକ୍ୟରେ ସମ୍ପୂର୍ଣ୍ଣ ସଭ୍ୟତା ଧ୍ୱଂସ ପାଇଗଲା । ତେଣୁ ପୂର୍ବବର୍ତ୍ତୀ ସଭ୍ୟତା ଯଦି ସାମାଜିକ ବୈଷମ୍ୟ ଓ ଆଧ୍ୟାତ୍ମିକ ସମାନତାର ଚାପରେ ଭାଙ୍ଗି ଯାଇଛି, ଆଧୁନିକ ସଭ୍ୟତା ସାମାଜିକ ସମାନତା ଓ ଆଧ୍ୟାତ୍ମିକ

ବୈଷମ୍ୟର ସ୍ତୂପରେ ଭାଙ୍ଗି ଯାଉଛି । ଯନ୍ତ୍ର ଓ ଶିଳ୍ପର ପ୍ରଚଣ୍ଡ ବିପ୍ଳବାତ୍ମକ ଅଭିବୃଦ୍ଧି ଫଳରେ ଆଧୁନିକ ମଣିଷ ଏପରି ଏକ ମାନସିକ ଅବସ୍ଥାରେ ଆସି ପଡ଼ିଅଛି ଯେ, ତା ପକ୍ଷରେ ତାର ନିକଟବର୍ତ୍ତୀ ବ୍ୟକ୍ତି ସହିତ ମଧ୍ୟ ପ୍ରତ୍ୟକ୍ଷ ଓ ଘନିଷ୍ଠ ସମ୍ପର୍କ ସ୍ଥାପନ କରିବା ସମ୍ଭବ ହୋଇ ପାରୁନାହିଁ ।

ଆଧୁନିକ ସଭ୍ୟତାର ଆରମ୍ଭ ସମୟରେ ମୂଳ ପ୍ରେରଣା ଯାହା ଥାଉନା କାହିଁକି, ବର୍ତ୍ତମାନ ଏହା ନିଜ ଜଟିଳତାରେ ଆବଦ୍ଧ ହୋଇ ପଡ଼ିଛି, ଏଥିରେ କୌଣସି କାର୍ଯ୍ୟ ଆଉ ସ୍ପଷ୍ଟ ଓ ପ୍ରତ୍ୟକ୍ଷ ଭାବରେ ନିୟନ୍ତ୍ରିତ ହେଉ ନାହିଁ । କାର୍ଯ୍ୟ, କାରଣ, ପରିଣାମ ପ୍ରତ୍ୟେକକୁ ଏକ ଦୂର ସୂତ୍ରରୁ ବିଚାର କରିବାକୁ ହେଉଛି । ଉତ୍ପାଦନର ପରିଣାମ, ଉତ୍ପାଦନର ଉପକରଣ, ଗଣତନ୍ତ୍ରର ବ୍ୟାବହାରିକ ପ୍ରୟୋଗ, ଶ୍ରେଣୀ ସଂଘର୍ଷର ଯଥାର୍ଥତା, ଏସବୁ ଏହାର ଅନ୍ତର୍ଭୁକ୍ତ । ସାଙ୍ଗେ ସାଙ୍ଗେ ବ୍ୟକ୍ତିର ବ୍ୟକ୍ତି ସହିତ ସମ୍ପର୍କ ପ୍ରତିଷ୍ଠା କରି କୌଣସି କାର୍ଯ୍ୟର ପ୍ରସାର ବା ସମାଧାନ ଆଉ ସମ୍ଭବ ନୁହେଁ । କଳ କାରଖାନାର ଉତ୍ପାଦନ, ଶ୍ରେଣୀସଂଘର୍ଷ ବା ଗଣତନ୍ତ୍ରର ପ୍ରୟୋଗ, ଯେ କୌଣସି ଦିଗରୁ ବିଚାର କଲେ ବି ଏହି ଅବସ୍ଥା ସ୍ପଷ୍ଟ ହୋଇଉଠିବ ।

ଉଦାହରଣ ସ୍ୱରୂପ ଶ୍ରେଣୀ ସଂଘର୍ଷର ମୂଳ ଅର୍ଥ ପରିବର୍ତ୍ତିତ ହୋଇ ଏକ ବିକୃତ ଅର୍ଥ ଧାରଣ କରିଛି, ଯାହା ଫଳରେ ଶ୍ରେଣୀ-ସଂଘର୍ଷ ନାଁରେ ସବୁ ଭୁଲ ଠିକ୍ ବୋଲି ଧରା ଯାଉଛି । ତେଣୁ ଲୋକଙ୍କୁ ହତ୍ୟା କରି ଦେଶର ସ୍ୱାସ୍ଥ୍ୟ ଦୃଷ୍ଟିରୁ ଠିକ୍ ବୋଲି କୁହାଯାଉଛି । ଗଣତାନ୍ତ୍ରିକ ମୌଳିକ ନିୟମକୁ ଧ୍ୱଂସ କରି ଗଣତନ୍ତ୍ରର ପ୍ରସାର ପାଇଁ ସେ ସବୁ ଆବଶ୍ୟକ ବୋଲି ପ୍ରଚାର କରାଯାଉଛି ଓ ଜାତୀୟ ସ୍ୱାଧୀନତାକୁ ବଳି ଦେଇ ବିଶ୍ୱ ଏକତା ଦୃଷ୍ଟିରୁ ତାହା ଉଚିତ ବୋଲି ପ୍ରମାଣ କରାଯାଉଛି । ଏ ସବୁ କ୍ଷେତ୍ରରେ କୌଣସି କାର୍ଯ୍ୟକୁ ସାଙ୍ଗେ ସାଙ୍ଗେ ପରୀକ୍ଷା କରି ତାର ଭଲ ମନ୍ଦ ବିଚାର କରିବାର ଯେଉଁ ମନୋଭାବ, ତାକୁ ଫିଙ୍ଗି ଦିଆଯାଉଛି । କେବଳ ସୁଦୂର ଭବିଷ୍ୟତରେ ଯେଉଁ ସୁବର୍ଣ୍ଣ ଯୁଗ ଆସିବ, ସେହି ଦୃଷ୍ଟିରୁ ଭଲ ମନ୍ଦର ବିଚାର କରାଯାଉଛି ଏବଂ ସେହି ସୁବର୍ଣ୍ଣଯୁଗର ଚିନ୍ତାରେ ଓ

ସୁବର୍ଣ୍ଣଯୁଗ ପାଇଁ ବର୍ତ୍ତମାନର ସବୁ କିଛି ବଳି ଦେବାକୁ ଲୋକେ ପ୍ରସ୍ତୁତ । ହୁଏତ ଏପରି ଆଶାରେ ଆନ୍ତରିକତା ଅଛି । କିନ୍ତୁ ଯାହା ସମ୍ଭବ ହୋଇନାହିଁ ଓ ଭବିଷ୍ୟତରେ ଆଦୌ ସମ୍ଭବ ନ ହୋଇପାରେ, ତା ପାଇଁ ବର୍ତ୍ତମାନର ସବୁ ଦୁର୍ନୀତି ଓ ପାପ ସହ ଜୁଆଡ଼ୀ ପରି ସାଲିସ୍ କରି-ଯାଇଛି । ନୂତନ ସଭ୍ୟତାରେ ବର୍ତ୍ତମାନକୁ ଉପେକ୍ଷା କରି ଭବିଷ୍ୟତରେ କେବେ ଭଲ ହେବ ଏ ଯେଉଁ ଚିନ୍ତା, ତାକୁ ସମ୍ପୂର୍ଣ୍ଣ ବାଦ ଦିଆଯିବ । ତା ପରିବର୍ତ୍ତରେ ବର୍ତ୍ତମାନ ପାଇଁ ଯାହା ମଙ୍ଗଳକର, ସେହି ଦୃଷ୍ଟିରୁ ନୂତନ ସଭ୍ୟତାର ସମସ୍ତ କାର୍ଯ୍ୟ ନିୟନ୍ତ୍ରିତ ହେବ ।

ସୁଦୂର ଅତୀତର ଉପରେ ଆଧୁନିକ ସଭ୍ୟତାର ଏହି ଏକାନ୍ତ ବିଶ୍ୱାସ ଫଳରେ ବୋଧହୁଏ ବହୁ ବିଭ୍ରାନ୍ତିକର ଓ କ୍ଷତିକର ଧାରଣାର ଉଦ୍‌ଭବ ହୋଇଛି, ଯେପରିକି ଆତ୍ମା ଓ ବସ୍ତୁ, ବ୍ୟକ୍ତି ଓ ସମାଜ, ଖାଦ୍ୟ ଓ ସଂସ୍କୃତି ସମ୍ପର୍କୀୟ ବିଭିନ୍ନ ଧାରଣା ସବୁ । ଏମାନେ ପରସ୍ପରର ବିପରୀତଧର୍ମୀ, ଏପରି ଧାରଣା କୃତ୍ରିମ ଓ ଅବାସ୍ତବ । ଉଦାହରଣ ସ୍ୱରୂପ ଆତ୍ମା ଓ ବସ୍ତୁ ପରସ୍ପରର ବିପରୀତ ଏପରି ଭାବିବା ଠିକ୍ ନୁହେଁ । ମୋ ନିଜ ବିଷୟରେ କହିଲେ ମୁଁ କହିବି ଯେ, ମୁଁ ଯେତେବେଳେ ଏକାକୀ ରହି ଆଧ୍ୟାତ୍ମିକ ଚିନ୍ତା କରିବାକୁ ଚାହେଁ, ସେତେବେଳେ କୌଣସି ବସ୍ତୁଗତ ଆଲୋଚନା ବା ସାହଚର୍ଯ୍ୟ ମୋତେ ଭଲ ଲାଗେ ନା । ସେହିପରି ଅନ୍ୟ ପକ୍ଷରେ ମୁଁ ଯେତେବେଳେ ବସ୍ତୁଗତ କାର୍ଯ୍ୟ ବା ଚିନ୍ତାର ସମ୍ପର୍କରେ ରହିବାକୁ ଚାହେଁ, ମୋତେ ଆଧ୍ୟାତ୍ମିକ ଆଲୋଚନା କ୍ଳେଶକର ହୁଏ । କେତେକ ଧାରଣାକୁ ପରସ୍ପରର ବିରୁଦ୍ଧ ବୋଲି ଭାବିବା ଆଧୁନିକ ମନର ଏକ ପ୍ରଧାନ ରୋଗ, ଏହା ଫଳରେ ଚିନ୍ତା ରାଜ୍ୟରେ ଯେଉଁ ଅଶରୀରୀ ପ୍ରେତମାନଙ୍କର ସୃଷ୍ଟି ହୋଇଛି, ସେମାନଙ୍କୁ ନିପାତ କରିବା ସହଜ ହେଉ ନାହିଁ । ଏହି ବିଭ୍ରାନ୍ତିର ମୂଳ ହେଉଛି ବର୍ତ୍ତମାନ ବା ସମସାମୟିକତାକୁ ଉପେକ୍ଷା କରିବାର ଯେଉଁ ଇଚ୍ଛା । ପୁରାଣ ଓ ଇତିହାସର ପରସ୍ପରର ସମ୍ପର୍କ ବିଷୟରେ ଏହି ଚିନ୍ତା ଆହୁରି ସ୍ପଷ୍ଟ ହେବ ।

ଭାରତରେ ରାମ ଓ ଶିବଙ୍କ କଥା କିଏ ନ ଜାଣେ ? ଅଶୋକ ବା ବୁଦ୍ଧଙ୍କ ପରି ଇତିହାସର ପ୍ରସିଦ୍ଧ ବ୍ୟକ୍ତିଙ୍କ ବିବରଣୀ ଠାରୁ ଆହୁରି ବିସ୍ତାରିତ ଭାବରେ ଆମେ ରାମ ଓ ଶିବଙ୍କ ଗଳ୍ପ ଜାଣୁ । ରାମ ବୋଧହୁଏ କାଳ୍ପନିକ ପୁରୁଷ । ଶିବ ତ ନିଶ୍ଚିତ ଭାବରେ କାଳ୍ପନିକ । ଏହା ସତ୍ତ୍ୱେ ଭାରତୀୟ ଲୋକଙ୍କର ମନ ଉପରେ ସେମାନଙ୍କର କି ଅଦ୍ଭୁତ ପ୍ରଭାବ ! ସେମାନଙ୍କ ସହିତ ତୁଳନା କଲେ ଐତିହାସିକ ଚରିତ୍ରମାନଙ୍କର ପ୍ରଭାବ ଅତି ନଗଣ୍ୟ । ଅନ୍ୟାନ୍ୟ ଦେଶମାନଙ୍କରେ ବି ଗଳ୍ପ ଓ ପୁରାଣ ରହିଛି । ୟୁରୋପରେ ଯେପରି ଆପୋଲୋ ବା ଡାଇଓନିସିୟୁସ୍ । ଅନେକ ସମୟରେ ଇତିହାସର ଚରିତ୍ର ବି ତଥ୍ୟ କଳ୍ପନା ସାହାଯ୍ୟରେ ପୁରାଣ-ଚରିତ୍ରରେ ରୂପାନ୍ତରିତ ହୋଇଯାଇଛି । ଆରବର ହୁସେନ୍, ଏହିପରି ଏକ ଚରିତ୍ର । ସିହା ସମ୍ପ୍ରଦାୟର ଲୋକ ହୁସେନ୍‌ଙ୍କୁ ଭଗବାନଙ୍କଠାରୁ ଅଧିକ ଭକ୍ତି କରନ୍ତି । ଏପରି କି ଭଗବାନଙ୍କୁ ନିନ୍ଦା କଲେ ନୈଷ୍ଠିକ ସିହା ହୁଏତ ସହ୍ୟ କରିପାରେ; କିନ୍ତୁ ହୁସେନଙ୍କ ନିନ୍ଦା ସେ କେବେହେଲେ ସହ୍ୟ କରିପାରିବ ନାହିଁ । ସମଗ୍ର ପୃଥିବୀରେ ମଣିଷର କଳ୍ପନା ଏହିପରି ବହୁ ପୁରାଣ ଓ ଗଳ୍ପ ସୃଷ୍ଟି କରିଛି ।

ଶିବଙ୍କର ଚରିତ୍ର ମୋତେ ଖୁବ୍ ଭଲ ଲାଗେ । ଏହାର କାରଣ, ବୋଧହୁଏ ଶିବ ମଣିଷ କଳ୍ପନା ଦ୍ୱାରା ସୃଷ୍ଟି ଏକମାତ୍ର ନିର୍ଦ୍ଦିଷ୍ଟ ଆକୃତି-ବିହୀନ ଚରିତ୍ର, ତାଙ୍କର ପ୍ରତ୍ୟେକ କାର୍ଯ୍ୟର କାରଣ ରହିଛି ଓ ପାର୍ବତୀଙ୍କ ସହିତ ତାଙ୍କର ସମ୍ପର୍କ ବହୁ ବିଚିତ୍ର । ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଏପରି ଅପୂର୍ବ ସତେଜ ଓ ଘନିଷ୍ଠ ପ୍ରେମର ସମ୍ପର୍କ ଅନ୍ୟ କେଉଁଠି ଅଛି କି ନାହିଁ ମୁଁ ଜାଣେ ନା । ଏ ହୁଏତ ଦେବଦେବୀର ପ୍ରେମ ବୋଲି କେହି କହିପାରେ । କିନ୍ତୁ ସାଧାରଣ ନାରୀ ଓ ଦେବୀ, ଏ ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ କଅଣ ? ଏ ବିଷୟରେ କାହାର ସନ୍ଦେହ ହେଲେ କାଏରୋ ସହରର ପ୍ରତ୍ନାଗାରରେ ସଂରକ୍ଷିତ ହୋଇଥିବା ପୁରାତନ ଦେବଦେବୀଙ୍କ ମୂର୍ତ୍ତି ସେ ପର୍ଯ୍ୟବେକ୍ଷଣ କରିପାରେ । ମୁଁ ବିଶେଷ କରି ଦେବୀ ଆଇସିସ୍‌ଙ୍କ ମୂର୍ତ୍ତି କଥା ସ୍ମରଣ କରୁଛି । କ୍ଷୁଦ୍ର ଯାଦୁକରୀ ମୂର୍ତ୍ତି । ପ୍ରାୟ ୪୦୦୦ ବର୍ଷ ତଳେ ମରିଥିବା ରାଜା ତୁତାଂଖାମେନ୍‌ଙ୍କର ସମାଧି ଉପରେ ଗୋଟିଏ ଗୋଡ଼ ସାମାନ୍ୟ ଉପରକୁ ଟେକି ଶୋକାକୁଳ ମୁଖରେ ଦେବୀ ଛିଡ଼ା ହୋଇଛନ୍ତି । କି

ଅପୂର୍ବ ସୁନ୍ଦର ଭଙ୍ଗୀ ! ଦେହର କି ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ! ଦର୍ଶକ ମାନଙ୍କ ରକ୍ତ ଉଚ୍ଛଳ ହୋଇଉଠିବ । ଇତିହାସଠାରୁ ଏହି ଗଳ୍ପ ପୁରାଣ ସବୁ ଆମ ମନକୁ ଏତେ ଅଧିକ ଆଚ୍ଛନ୍ନ କରିବାର କାରଣ କଅଣ ? ସେମାନେ ଏପରି କଥା କହନ୍ତି, ଯାହା କି ଅମର । ରୂପ ଓ ଆକୃତି ବଦଳିଗଲେ ବି ତାହା ଅନନ୍ତକାଳ ପର୍ଯ୍ୟନ୍ତ ସେହିପରି ରହିଥିବ । ଏହି ଗଳ୍ପମାନଙ୍କରେ ପ୍ରେମ, ସହାନୁଭୂତି ଓ ଆନନ୍ଦ ସହିତ ଧ୍ୟାନର ସଂଯମ ମିଶ୍ରିତ ହୋଇ ରହିଛି ।

ପ୍ରତି ମୁହୂର୍ତ୍ତ ସମୟର ସୀମାରେ ଆବଦ୍ଧ, ପୁଣି ଏହା ସମୟାତୀତ କାଳପର୍ଯ୍ୟନ୍ତ ବ୍ୟାପ୍ତ । ପ୍ରତି ମୁହୂର୍ତ୍ତର ଏହି ଦୁଇ ବିଭିନ୍ନ ପ୍ରକୃତିକୁ ସବୁ ସମୟରେ ଭୁଲ ଭାବରେ ବିଚାର କରାଯାଇଛି । ଇତିହାସର ଦାର୍ଶନିକ-ମାନେ ବାରମ୍ବାର ଭବିଷ୍ୟତ ସୁବର୍ଣ୍ଣଯୁଗର ଚିନ୍ତା କରିଛନ୍ତି । କିନ୍ତୁ ଏହି ଚିନ୍ତାର ଧାରାରେ ସେମାନେ ସମୟର ସୀମାବଦ୍ଧ ପ୍ରକୃତି ବିଷୟରେ ଅଧିକତର ସଚେତ ଓ ସମୟର ସୀମାତୀତ ପ୍ରକୃତି କଥା ଭୁଲି ଯାଇଛନ୍ତି କହିଲେ ଚଳେ । ଅନ୍ୟ ପକ୍ଷରେ ମାତିବାଦୀମାନେ ବ୍ୟକ୍ତିର ଚରିତ୍ର ଓ ଉନ୍ନତ ଆଦର୍ଶ କଥା ପ୍ରଚାର କରିବା ସମୟରେ ସମୟର ସୀମାବଦ୍ଧ ପ୍ରକୃତି କଥା ଭୁଲିଯାଇ କେବଳ ସୀମାତୀତ ପ୍ରକୃତି କଥାହିଁ କହିଛନ୍ତି । କିନ୍ତୁ ଯେ କୌଣସି ମୁହୂର୍ତ୍ତ ଉଭୟ ସୀମାରେ ସୀମିତ ଓ ଅସୀମ । ଏହା ଯେତେ-ବେଳେ ସମୟର ଗଣ୍ଡିରେ ଆବଦ୍ଧ, ସେତେବେଳେ ଏହା ଐତିହାସିକ ସମୟ, ସେତେବେଳେ ଏହାର କାର୍ଯ୍ୟକାରୀ ଶକ୍ତିକୁ ସନ୍ଧାନ, ସମର୍ଥନ ଓ ନିୟନ୍ତ୍ରଣ କରାଯାଇପାରେ । କିନ୍ତୁ ମୁହୂର୍ତ୍ତ ଯେତେବେଳେ ସୀମାତୀତ କାଳ, ସେତେବେଳେ ଏହା ଗଳ୍ପ, ପୁରାଣ, ସାହିତ୍ୟ, କଳା, ଧର୍ମ ଓ ଦର୍ଶନର ସମୟ । ତେଣୁ ଇତିହାସର ବିଶ୍ଳେଷଣ ଯଦି କେବଳ ଘରି ପାଖର ବାସ୍ତବ ଘଟଣାବଳୀରେ ଆବଦ୍ଧ ହୋଇପଡ଼େ, ତେବେ ଏହା ଏକଦେଶଦର୍ଶୀ ହେବ ।

ଇତିହାସକୁ ଯଦି ଜୀବନର ଗଦ୍ୟ ଅଂଶ ବୋଲି ଧରାଯାଏ, ତେବେ ଗଳ୍ପ ଓ ପୁରାଣ ପ୍ରଭୃତି ଏହାର କବିତା । ଗଦ୍ୟରୁ

ଅନେକ କିଛି ଶିଖିବାର ଅଛି ସନ୍ଦେହ ନାହିଁ । ଗଦ୍ୟର ଘଟଣାବଳୀରେ ହୁଏତ ଏକ ଯୁକ୍ତିଯୁକ୍ତ ପାରସ୍ପରିକ ସମ୍ପର୍କ ରହିଛି । କିନ୍ତୁ ଏହି ଘଟଣା-ଗୁଡ଼ିକ ଯଦି କେବଳ ଇତିହାସ ମଧ୍ୟରେ ଆବଦ୍ଧ ହୋଇ ରହେ, ତେବେ ଯୁକ୍ତିଯୁକ୍ତ ପାରସ୍ପରିକ ସମ୍ପର୍କର ବିଶେଷ ମୂଲ୍ୟ ନାହିଁ । ଇତିହାସ ବାହାରର ପରିସ୍ଥିତି ସହିତ ସମ୍ପୃକ୍ତ ହୋଇ ପାରିଲେ ହିଁ ଏହାର ବିଶେଷତ୍ୱ ପ୍ରକାଶ ପାଇବ । ଭବିଷ୍ୟତର ସୁବର୍ଣ୍ଣ ଯୁଗର ସ୍ୱପ୍ନ ହୁଏତ କେବେ ସମ୍ଭବ ହୋଇପାରେ; କିନ୍ତୁ ସେଥିପାଇଁ ଇତିହାସର ସୀମାବଦ୍ଧ ଘଟଣାବଳୀର ବିଶେଷ ଉପଯୋଗିତା ନାହିଁ । ଚନ୍ଦାକାର ଦୃଷ୍ଟିଭଙ୍ଗୀ ମୂଳରେ ଯେଉଁ ଦୁଃଖଦାୟକ ଉପସ୍ଥାପନା ରହିଛି, ତାରଯୋଗୁଁହିଁ ସୁବର୍ଣ୍ଣଯୁଗ ସମ୍ଭବ ହୋଇପାରେ । ମଣିଷର ଭାଗ୍ୟ ଓ ଭବିଷ୍ୟତ ଯେ କେବଳ ଇତିହାସ ପୃଷ୍ଠାରୁ ଜାଣିହେବ, ତା ନୁହେଁ । ଗଳ୍ପ ଓ ପୁରାଣର ପ୍ରତି ମୁହୂର୍ତ୍ତର ମୃତ୍ୟୁହୀନ, ଚିରସ୍ଥାୟୀ ପ୍ରକୃତିରେ ଏହା ନିହିତ—ଯାହା କେବେ ଘଟିନାହିଁ, ଅଥଚ ସବୁଦିନେ ଘଟିବାପରି ମନେ ହୁଏ ଓ ସବୁବେଳେ ବାସ୍ତବ। ତେଣୁ ମଣିଷ ଯଦି ଇତିହାସ ଭିତରେ ବଞ୍ଚିବାକୁ ଚାହେଁ, ଇତିହାସ ବାହାରେ କିପରି ବଞ୍ଚିବାକୁ ହେବ ତା ଶିକ୍ଷା କରିବା ଉଚିତ ।

ମଣିଷ ଯଦି ମୁହୂର୍ତ୍ତର ଏହି ଉଭୟ ପ୍ରକୃତି ବିଷୟରେ ଅବହିତ ହୋଇ ଉଭୟକୁ ତାର ଜୀବନର ଅଙ୍ଗୀଭୂତ କରିପାରେ, ତାହାହେଲେ ଏକ ନୂତନ ସଭ୍ୟତାର ସୃଷ୍ଟି ହେବ । ଏହି ସଭ୍ୟତାର ବଳରେ ହୁଏତ ସୁବର୍ଣ୍ଣଯୁଗର ସୃଷ୍ଟି ହୋଇପାରେ । କିନ୍ତୁ ଏହି ସୁବର୍ଣ୍ଣଯୁଗରେ କେବଳ ଭବିଷ୍ୟତର ଆଶା ନ ରହି ବର୍ତ୍ତମାନର ଆବଶ୍ୟକତା ଜଡ଼ିତ ହୋଇ ରହିବ । ଭବିଷ୍ୟତ ସୁବର୍ଣ୍ଣଯୁଗର ଏ ଯେଉଁ ଆଶା, ଏ କେବଳ ଲୋଭୀ ମଣିଷ ଅଭିଳାଷର ପ୍ରତୀକ । ସେ ଭବିଷ୍ୟତରେ କେବେ ଧନୀ ହେବ, ଏହି ଆଶାରେ ବର୍ତ୍ତମାନର ସୁଖସ୍ୱାଚ୍ଛନ୍ଦ୍ୟରୁ ନିଜକୁ ବଞ୍ଚିତ କରେ । ଏହି ଚିନ୍ତା ମୁହୂର୍ତ୍ତର କାଳାତୀତ ବ୍ୟାପ୍ତିକୁ ଅସ୍ୱୀକାର କରେ ଓ ଧର୍ମ, ଦର୍ଶନ, ସାହିତ୍ୟ, କଳା, ପୁରାଣ ପ୍ରଭୃତିରେ ମଣିଷ ବ୍ୟକ୍ତିତ୍ୱର ଯେଉଁ ବିଶିଷ୍ଟତା ପ୍ରକାଶିତ ହୋଇଛି, ତାକୁ ତୁଚ୍ଛ କରିଦିଏ । ଯେଉଁ ସମୟ ବା ସ୍ଥାନ ହେଉନା କାହିଁକି ମଣିଷ ବ୍ୟକ୍ତିଗତ ଭାବରେ ନିଜର ଆଦର୍ଶ, ଚିନ୍ତା,

ସୌନ୍ଦର୍ଯ୍ୟ ଅନୁଭୂତି, ବିଶ୍ୱାସ ଓ ପ୍ରେମ ପ୍ରକାଶ କରିଥାଏ ଓ ଏ ଦିଗରୁ ସବୁ ମଣିଷଙ୍କର ଆବେଗକୁ ଏକାଠି କରି ବିଚାର କରିହେବ । ମଣିଷ ଜୀବନର ଏସବୁ ଆବେଗ ଓ ମୂଲ୍ୟବୋଧ ଇତିହାସ ଦ୍ୱାରା ସୀମାବଦ୍ଧ ନୁହେଁ । କେବଳ ମୂର୍ଖ ଏସବୁକୁ ଇତିହାସର ଗଣ୍ଡିରେ ଆବଦ୍ଧ କରି ବିଚାର କରିବାକୁ ଚେଷ୍ଟା କରିବ ।

ଠିକ୍ କହିବାକୁ ଗଲେ ଆମେ ଯଦି ଆମର ସମସାମୟିକ ପରିବେଶରେ ସୁବର୍ଣ୍ଣଯୁଗ ତିଆରି କରିବାକୁ ଚେଷ୍ଟାକରୁ, ତା'ହେଲେ ହୁଏତ ସେହି କାଳ୍ପନିକ ସୁବର୍ଣ୍ଣଯୁଗ ସମ୍ଭବ ହୋଇପାରିବ । ପୁଣି ବର୍ତ୍ତମାନ ସମ୍ପର୍କରେ ସଚେତ ହୋଇ ବର୍ତ୍ତମାନର ସୁଖସ୍ୱାଚ୍ଛନ୍ଦ୍ୟକୁ ଆଖି ଆଗରେ ରଖି କାର୍ଯ୍ୟ କଲେ ମୁହୂର୍ତ୍ତର ଦ୍ୱିବିଧ ପ୍ରକୃତି ମଧ୍ୟରେ ସଂଯୋଗ ସ୍ଥାପନ ହୋଇପାରିବ ଓ ଆମେ ମୁହୂର୍ତ୍ତକୁ ଉଭୟ କାଳ ଓ କାଳାତୀତ ବ୍ୟାପ୍ତିରେ ଉପଲବ୍ଧି କରିପାରିବା । ଅନ୍ୟଥା ଉଭୟକୁ ବିଭିନ୍ନ ଭାବରେ ବିଚାର କରି ଗୋଟିଏ ଆଧ୍ୟାତ୍ମିକ ଜଗତର ଓ ଅନ୍ୟଟି ବସ୍ତୁ ଜଗତର, ଏହିପରି ଭାବରେ ଚିନ୍ତା କଲେ ମଣିଷ ସଭ୍ୟତା ଘୋର ବିପର୍ଯ୍ୟୟର ସମ୍ମୁଖୀନ ହେବ । ତେଣୁ ବର୍ତ୍ତମାନ ବା ସମସାମୟିକତାହିଁ ଯେ କୌଣସି ବିଚାରର ମୂଳମନ୍ତ୍ର ହେବା ଉଚିତ ।

ଶ୍ରେଣୀ ସଂଘର୍ଷର ଧାରଣା, ଉତ୍ପାଦନର କୌଶଳ ବା ବିଶ୍ୱ-ପାର୍ଲା-ମେଣ୍ଟର ଚିନ୍ତା ବର୍ତ୍ତମାନର ଆବଶ୍ୟକତା ଦିଗରୁ ନିୟନ୍ତ୍ରିତ ହେଲେ ମୁହୂର୍ତ୍ତର ଦ୍ୱିବିଧ ପ୍ରକୃତି ମଧ୍ୟରେ ସଂଯୋଗ ସ୍ଥାପିତ ହୋଇ ପରିଶେଷରେ ଉଭୟ ଏକୀଭୂତ ହୋଇପାରିବ । ବର୍ତ୍ତମାନର ଦିଗରୁ ବିଚାର କଲେ ପ୍ରତ୍ୟେକ କାର୍ଯ୍ୟର ତାର ନିଜସ୍ୱ ଯଥାର୍ଥତା ରହିଛି ଓ ପରବର୍ତ୍ତୀ କାର୍ଯ୍ୟର ଭଲମନ୍ଦରୁ ବର୍ତ୍ତମାନର କାର୍ଯ୍ୟକୁ ବିଚାର କରିବାର କୌଣସି ଆବଶ୍ୟକତା ନାହିଁ । ପୁଣି ପ୍ରତି କାର୍ଯ୍ୟକୁ ତାର ନିଜର ପରିସରରେ ବିଚାର କରିବା ସମୟରେ ଇତିହାସର କାର୍ଯ୍ୟକାରୀ ଶକ୍ତିକୁ ବୁଝିରଖିବା ଉଚିତ । କାରଣ ଏହାଦ୍ୱାରା ମଙ୍ଗଳକର ଶକ୍ତିକୁ ଉତ୍ସାହ ଦେଇ ମଣିଷର ଭବିଷ୍ୟତକୁ ଭଲଭାବରେ ଗଢ଼ି ହେବ । ସହାନୁଭୂତି ଓ ବିଦ୍ରୋହ ସବୁ ସମୟରେ ମିଳିମିଶି ରହିବା

ଉଚିତ । ତା ନ କରି ଯଦି କୌଣସି ଗୋଟିଏ ଦିଗ ପ୍ରତି ଅଧିକ ଆନୁଗତ୍ୟ ଦେଖାଯାଏ, ତା ହେଲେ ଉଭୟ ବସ୍ତୁଜଗତ ଓ ଆଧ୍ୟାତ୍ମିକ ଜଗତରେ ବିପର୍ଯ୍ୟୟର ସୂତ୍ରପାତ ହେବ ।

ଯେଉଁମାନେ ସୁଦୂର ସୁବର୍ଣ୍ଣଯୁଗର ଚିନ୍ତାରେ ସବୁବେଳେ ବିବ୍ରତ, ସେମାନେ ନିଜକୁ କେବଳ ଅଦ୍ଭୁତ ଛଳନାରେ ପ୍ରତାରିତ କରନ୍ତି । ଏହି ଛଳନା ଯୋଗୁଁ ଯାବତୀୟ ଅସୁନ୍ଦର ଓ ଗର୍ହିତ କାର୍ଯ୍ୟ ଉଚ୍ଚ ଆଦର୍ଶ ପ୍ରସୂତ ବୋଲି ସେମାନେ ପ୍ରଚାର କରନ୍ତି ଓ ସବୁବେଳେ କେଉଁ ସୁଦୂର ଭବିଷ୍ୟତର ମୁହୂର୍ତ୍ତରୁ ବର୍ତ୍ତମାନକୁ ବିଚାର କରିବା ମନୋଭାବ ବୃଦ୍ଧି ପାଏ । ଏପରି ସୁବର୍ଣ୍ଣ ଯୁଗ କେବେହେଲେ ଆସିବ ନାହିଁ । କିନ୍ତୁ ଆମ୍ଭେମାନେ ଯଦି ବର୍ତ୍ତମାନ ସମ୍ପର୍କରେ ସଚେତନ ହୋଇ କାର୍ଯ୍ୟ କରୁ ଓ ଉତ୍ପାଦନ ଶ୍ରେଣୀ ସଂଘର୍ଷ ବା ଶ୍ରେଣୀ ଜାତିହୀନ ସମାଜ ପ୍ରତିଷ୍ଠା ଦିଗରେ ଏହି ମନୋଭାବ ପ୍ରକାଶ ପାଏ, ତେବେ ମୁହୂର୍ତ୍ତକୁ ଉଭୟ ସୀମା ଓ ସୀମାହୀନ ଭାବରେ ଉପଲବ୍ଧି କରିହେବ । ଆମେ ଆଜ ଏହି ମୁହୂର୍ତ୍ତରେ ଓ ଏହି ସ୍ଥାନରେ ସୁବର୍ଣ୍ଣଯୁଗ ପାଇଁ ଚେଷ୍ଟା କଲେ ହୁଏତ ଭବିଷ୍ୟତ ପୁରୁଷମାନେ ପୃଥିବୀରେ ଯୁଦ୍ଧ, ଦାରିଦ୍ର୍ୟ ଓ ଭୟମୁକ୍ତ ସମାଜ ପ୍ରତିଷ୍ଠା କରି ପାରିବେ ।



**୧୧**

# ସାମଗ୍ରିକ ଦକ୍ଷତା

କୌଣସି ଅଣ୍ଟଚ ସଭ୍ୟତା ପକ୍ଷରେ ନିଜର ଗତିପଥର ଧାରା ପରିବର୍ତ୍ତନ କରିବା ସମ୍ଭବ ହୋଇନାହିଁ । ଆରମ୍ଭରୁ ଯେଉଁ ପଥରେ ସଭ୍ୟତା ଅଗ୍ରଗତି କରିଛି, ସେହି ଦିଗରେ ହୁଏତ ସର୍ବୋଚ୍ଚ ଦକ୍ଷତା ହାସଲ ହୋଇଛି । କିନ୍ତୁ ନିର୍ଦ୍ଦିଷ୍ଟ ଦିଗର ପରିବର୍ତ୍ତନ କରି ବିଭିନ୍ନ ଦିଗରେ ସର୍ବୋତ୍ତମ ଓ ସାମଗ୍ରିକ ଦକ୍ଷତା ଲାଭ କରିବା ଆଦୌ ସମ୍ଭବପର ହୋଇ ପାରିନାହିଁ । ସମଗ୍ର ମଣିଷଜାତି ଓ ସମଗ୍ର ବ୍ୟକ୍ତିର ସର୍ବାଙ୍ଗୀନ ଉନ୍ନତି ହେବାଦ୍ୱାରା କେବଳ ସଭ୍ୟତାର ସର୍ବୋତ୍ତମ ଓ ସାମଗ୍ରିକ ଦକ୍ଷତା ହାସଲ ହୋଇପାରିବ । ଏହି ଉଭୟ ଦିଗରୁ ବିଚାର କଲେ ପୂର୍ବର କୌଣସି ସଭ୍ୟତା ସଫଳ ହୋଇ ପାରିନାହିଁ । ପ୍ରତି ସଭ୍ୟତା ନିଜର ନିର୍ଦ୍ଦିଷ୍ଟ ଗୋଷ୍ଠୀ ପାଇଁ ସର୍ବୋଚ୍ଚ ଦକ୍ଷତା ହାସଲ କରିବାକୁ ଚେଷ୍ଟା କରିଛି । ଉଦ୍ଦେଶ୍ୟ ହେଉଛି, ଏହାଦ୍ୱାରା ବାହାରର ଗୋଷ୍ଠୀ ଓ ସଭ୍ୟତା ସହିତ ସଂଗ୍ରାମରେ ଏହା ବିଜୟୀ ହେବ । ଏହି ଦକ୍ଷତାର ପ୍ରକୃତି ଓ ଚରିତ୍ରରେ ବିଭିନ୍ନତା ରହିଛି ସତ; କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ପରିଣତି ଏକ । ନିର୍ଦ୍ଦିଷ୍ଟ ଗୋଷ୍ଠୀ ଓ ବାହାରର ପୃଥିବୀ ମଧ୍ୟରେ ପ୍ରଭେଦ ବଢ଼ିଛି ଓ ଏହା ଫଳରେ ଆଞ୍ଚଳିକ ଶକ୍ତି ଓ ଅର୍ଥର ତାରତମ୍ୟ ହେବା ସଙ୍ଗେ ସଙ୍ଗେ ପୃଥିବୀରେ ସମାନତାର ଭାରସାମ୍ୟ ବ୍ୟାହତ ହୋଇଛି । ଏହି ସଭ୍ୟତାରେ ଗୋଷ୍ଠୀର ସର୍ବୋଚ୍ଚ ଦକ୍ଷତାର ପରିସରରେ ହିଁ କେବଳ ବ୍ୟକ୍ତିର ଶକ୍ତିର ପ୍ରକାଶ, ତା ବାହାରେ ନୁହେଁ । ଫଳରେ ଯଦି କୌଣସି ପ୍ରତିଭା ବା ବୁଦ୍ଧି ଏହି ଦକ୍ଷତାର ଅଭିବୃଦ୍ଧି ଦିଗରେ ବିଶେଷ ଆବଶ୍ୟକ ନୁହେଁ, ତା ହେଲେ ତାର କୌଣସି ବ୍ୟବହାର ହିଁ ହୋଇପାରିବ ନାହିଁ । ତେଣୁ ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ପ୍ରକାଶ

ଏହି ସଭ୍ୟତାରେ ସମ୍ଭବ ନୁହେଁ ବା କେବେ ଘଟି ନାହିଁ । ବ୍ୟକ୍ତିର ବିଭିନ୍ନ ଦିଗ ହୁଏତ ବିଭିନ୍ନ ସମୟରେ ବ୍ୟବହୃତ ହୋଇଛି ; କିନ୍ତୁ ବ୍ୟକ୍ତିର ସର୍ବାଙ୍ଗୀନ ପରିପ୍ରକାଶ କେବେ ସମ୍ଭବ ହୋଇନାହିଁ । ବର୍ତ୍ତମାନର ସଭ୍ୟତା ଓ ଏହାର ଭବିଷ୍ୟତ କେବଳ ମାତ୍ର ଏହି ସାମଗ୍ରିକ ଦକ୍ଷତା ଦିଗରୁହିଁ ବିଚାର କରାଯାଇପାରେ ।

ସମସାମୟିକ ସଭ୍ୟତାର ସବୁଠାରୁ ସ୍ପଷ୍ଟ ପ୍ରକାଶ ହେଉଛି ଏହାର ପୁଞ୍ଜିର ବିନିଯୋଗରେ । ଯଦି ପୃଥିବୀରେ ଯେତେ ଲୋକ ଅଛନ୍ତି, ସମସ୍ତେ ସଭ୍ୟତାର ବାହକ ବା ନେତାମାନଙ୍କୁ ଅନୁସରଣ କରି ପୁଞ୍ଜିର ବିନିଯୋଗ କରନ୍ତି, ତାହେଲେ ଅର୍ଥନୈତିକ ଉନ୍ନତିର ଅନୁପାତରେ ପୁଞ୍ଜିର ବିନିଯୋଗ ବହୁତ ବେଶି ହେବ । ଯଦି ସମସ୍ତେ ଯୁକ୍ତରାଜ୍ୟ ଆମେରିକାର ଛାଞ୍ଚରେ ନିଜକୁ ଗଢ଼ିବାକୁ ଚାହାନ୍ତି, ତାହେଲେ ପ୍ରାୟ ଲକ୍ଷେ ପଚିଶ ହଜାର କୋଟି ଟଙ୍କାର ପୁଞ୍ଜି ବିନିଯୋଗ କରିବାକୁ ପଡ଼ିବ । ଏପରିକି ପଶ୍ଚିମ ୟୁରୋପର ଛାଞ୍ଚରେ ନିଜକୁ ଗଢ଼ିବାକୁ ହେଲେ ଲକ୍ଷେ ପଚିଶ ହଜାର କୋଟିର ପ୍ରାୟ ଅଧାଅଧି ଅର୍ଥ ଆବଶ୍ୟକ । ଅନୁନ୍ନତ ଦେଶ-ମାନଙ୍କ ପକ୍ଷରେ ଏହି ପରିମାଣର ପୁଞ୍ଜି ସଂଗ୍ରହ କରିବା ଆଦୌ ସମ୍ଭବ ନୁହେଁ । ଉନ୍ନତ ଦେଶମାନେ ହୁଏତ ଶହେ ବର୍ଷ କାଳ ନିଜକୁ ସମାନ ଉନ୍ନତ ରଖିପାରିଲେ, ଏହି ପରିମାଣର ପୁଞ୍ଜି ସଂଗ୍ରହ କରିପାରନ୍ତି । କିନ୍ତୁ ଏଥିପାଇଁ ଯେଉଁ ଅଦମ୍ୟ ଇଚ୍ଛା ଶକ୍ତି ଦରକାର, ସେମାନଙ୍କର ତା ହେବ ନାହିଁ ।

ଏହା ବ୍ୟତୀତ ବର୍ତ୍ତମାନର ଯନ୍ତ୍ର ଓ ଶିଳ୍ପ ସଭ୍ୟତାରେ ଏକ ଅନ୍ତର୍ନିହିତ ଦୁର୍ବଳତା ରହିଛି, ଯାହା ଫଳରେ କି ଏହା ସାରା ପୃଥିବୀରେ ସମାନ ଭାବରେ ପ୍ରସାରିତ ହୋଇପାରିବ ନାହିଁ । ଏପରି କି ଉନ୍ନତ ଦେଶମାନେ ନିଜ ନିଜର ଉନ୍ନତ ଜୀବନଯାପନର ମାନ କିଛି ଅଂଶରେ ପରିତ୍ୟାଗ କରି ଅନୁନ୍ନତ ଦେଶମାନଙ୍କର ଉତ୍ପାଦନ ବଢ଼େଇବାରେ ସାହାଯ୍ୟ କଲେ ବି ସବୁ ସମୟରେ ଏକ ସ୍ଥାୟୀ ସମୟାନୁକ୍ରମିକ ପ୍ରଭେଦ ରହିଯିବ । କେବଳ ଉନ୍ନତ ଦେଶମାନଙ୍କରେ ଯଦି ଯନ୍ତ୍ର ଓ ଶିଳ୍ପର

ବପ୍ଳବାତ୍ମକ ଅଗ୍ରଗତି ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ, ତାହେଲେ ବୋଧହୁଏ ଏ ପ୍ରଭେଦ ଦୂର ହେବ । କିନ୍ତୁ ଏହା ଫଳରେ ଇତିହାସର ଯେଉଁ କାର୍ଯ୍ୟକାରୀ ଶକ୍ତି ମୁକ୍ତ ହେବ, ତାହାର ଆଞ୍ଚଳକ ବୈଷମ୍ୟ ବଢ଼ିବ ।

ନଜ ସଭ୍ୟତାର ନର୍ଦ୍ଦିଷ୍ଟ ସୁଯୋଗ ଓ ସ୍ୱାଚ୍ଛନ୍ଦ୍ୟକୁ ରକ୍ଷା କରିବା ପାଇଁ ପରମାଣୁ ବା ଉଦ୍‌ଯାନ ବୋମା ତିଆରି କରିବା ଯେତେ ସହଜ, ସେହସବୁ ସ୍ୱାଚ୍ଛନ୍ଦ୍ୟକୁ ଅନ୍ୟମାନଙ୍କ ସହ ଭାଗ କରି ଭୋଗ କରିବା ଏତେ ସହଜ ନୁହେଁ । ଏହ ବୋମା ସବୁର ଭୟାବହତା ଇତିହାସର ପୃଷ୍ଠ-ଭୂମିରେ ସବୁବେଳେ ସ୍ପଷ୍ଟ ହୋଇ ରହୁଛି । ଆଧୁନକ ସଭ୍ୟତା ଉପରେ ଏହ ବୋମାର ବଶୀଷିକା ଭାରି ହୋଇ ଚାପି ବସିଛି, ସତେ ଯେପରି ସେ ସବୁ ଏହ ସଭ୍ୟତାର ନଖ ଓ ଦାନ୍ତ । ଏହ ବୋମାର ଅଧିକାରୀମାନେ ଗତ ଯୁଗର ଅତକାୟ ପ୍ରାଣୀ 'ଡିନୋସାର' ପରି ନଜ ଭାରରେ ନଜେ ଗତ-ପ୍ରାଣ । କନ୍ତୁ ଯେଉଁ ମାରଣାସ୍ତ୍ର ସାହାଯ୍ୟରେ ୟୁରୋପୀୟ ସଭ୍ୟତା ଅନ୍ୟ-ମାନଙ୍କୁ ପରାସ୍ତ କରି ଆସିଛି, ସେହ କ୍ରମ ବର୍ଦ୍ଧିଷ୍ଣୁ ଭୟାବହ ଯୁଦ୍ଧଶକ୍ତିର ସର୍ବୋଚ୍ଚ ଦକ୍ଷତାର ପ୍ରତୀକ ହେଉଛି ପରମାଣୁ ବୋମା ଓ ତାର ଆନୁସଙ୍ଗିକ ପରମାଣୁ ଅସ୍ତ୍ର । ଏସବୁ ପୁରାଣର ସେହ ଭୟଙ୍କର ସର୍ପ ପରି, ଅହରହ ଗୁପ୍ତ ଅର୍ଥକୁ ପହରା ଦେଇ ରକ୍ଷା କରିଛି; କନ୍ତୁ ବର୍ତ୍ତମାନ କାଳରେ ଏହ ସର୍ପମାନଙ୍କ ସଂଖ୍ୟା ବହୁତ ବଢ଼ି ଯାଇଛି ଓ ସେମାନଙ୍କର ବିଷ ଜ୍ୱାଳାରେ ସମ୍ପତ୍ତିର ଅଧିକାରୀମାନେ ବି ଭୀତତ୍ରସ୍ତ । ଏକଥା ନଶ୍ଚିତ ଯେ, ପରମାଣୁ-ଅସ୍ତ୍ରର ଅଧିକାରୀମାନେ ବି ଏହ ଅସ୍ତ୍ରର ଜ୍ୱାଳାରେ ସମୟକ୍ରମେ ଅସ୍ଥିର ହୋଇ ଉଠିବେ, ପରମାଣୁ ଅସ୍ତ୍ର ଶାନ୍ତିର ପରିପନ୍ଥୀଭାବରେ ଛିଡ଼ା ହେବ ଓ ଏହ ଅସ୍ତ୍ରର ବହୁଳ ଉତ୍ପାଦନ ଫଳରେ ଯେଉଁ ମନୋଭାବ ଜାଗ୍ରତ ହେବ, ପରିଶେଷରେ ତାହା ବର୍ତ୍ତମାନର ସଭ୍ୟତାକୁ ଛିନ୍ନଭିନ୍ନ କରିଦେବ ।

ଏଠାରେ ହୁଏତ ପ୍ରଶ୍ନ ପଚରାଯାଇପାରେ ଯେ, ବର୍ତ୍ତମାନର ପୃଥିବୀରେ ଏପରି କୌଣସି ଦେଶ ଅଛି କି, ଯେଉଁଠି ଅନ୍ୟପ୍ରକାର ସଭ୍ୟତାରେ ଅନ୍ୟ ଭାବରେ ଯୁଦ୍ଧର ଉପକରଣ ପ୍ରସ୍ତୁତ କରିବାରେ

ଦକ୍ଷତା ସାଧିତ ହୋଇଛି ? ଉତ୍ତର ହେବ ନାଁ ନାହିଁ । ଏପରିକି ଯେଉଁମାନେ ଅହିଂସା କଥା କହୁଛନ୍ତି ଓ ଆନ୍ତର୍ଜାତିକ ସଂପର୍କ କ୍ଷେତ୍ରରେ ଅହିଂସାକୁ ଅସ୍ତ୍ରଭାବରେ ବ୍ୟବହାର କରିବାକୁ ଘୋଷଣା କରୁଛନ୍ତି, ସେମାନଙ୍କର ବି ବିକେନ୍ଦ୍ରୀକରଣ-ଦେଶରକ୍ଷା କିଅଣ, ସେ ବିଷୟରେ ଧାରଣା ନାହିଁ ଓ ନୋଖିପରି ୟୁରୋପୀୟ ସଭ୍ୟତାର ଯାବତୀୟ ପୁରୁଣା ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାକୁ ପଛଉନାହାନ୍ତି; ତେଣୁ ବର୍ତ୍ତମାନ ଏପରି କୌଣସି ସଭ୍ୟତା ନାହିଁ ବା ଏପରି କୌଣସି ସଭ୍ୟତା ଗଢ଼ିଉଠି ନାହିଁ, ଯାହାକି ବର୍ତ୍ତମାନର ସଭ୍ୟତାସହ ପ୍ରତିଦ୍ୱନ୍ଦିତା କରି ତାକୁ ପରାସ୍ତ କରି ପାରିବ । କିନ୍ତୁ ଏ ବୋଧହୁଏ ସେହି ଡିନୋସାର ପରି । ଡିନୋସାର ପୃଥିବୀରୁ ନିଶ୍ଚିହ୍ନ ହୋଇ ଆସିଲାବେଳକୁ ବି ଅନ୍ୟ କୌଣସି ଶକ୍ତିଶାଳୀ ପ୍ରାଣୀ ନ ଥିଲେ, ତେଣୁ ବର୍ତ୍ତମାନ ସଭ୍ୟତାର ଅନ୍ୟ କେହି ପ୍ରତିଦ୍ୱନ୍ଦୀ ଅଛି କି ନାହିଁ ଏ ସମସ୍ୟା ନୁହେଁ । କଥା ହେଲା, ଆଧୁନିକ ସଭ୍ୟତା ନିଜେ ଇଚ୍ଛା କରି ନିଜର ଗତିପଥ ସର୍ବୋଚ୍ଚ ଦକ୍ଷତାର ଦିଗରୁ ସର୍ବାଙ୍ଗୀନ ଦକ୍ଷତା ଦିଗକୁ ବଦଳେଇ ପାରିବ କି ନାହିଁ । ଏହି ସଭ୍ୟତାର ଗତିପଥ ସର୍ବାଙ୍ଗୀନ ଦକ୍ଷତା ଦିଗକୁ ପରିଚାଳିତ ନ ହେଲେ ଦିନେ ନା ଦିନେ ଏହା ପରାସ୍ତ ହୋଇ ନିଶ୍ଚିହ୍ନ ହେବ, ଏହା ନିଶ୍ଚିତ ।

ଆଧୁନିକ ୟୁରୋପୀୟ ସଭ୍ୟତାର ପରିସରରେ ସାମଗ୍ରିକ ଦକ୍ଷତାର କର୍ମପ୍ରେରଣା ଓ ଏହାର ଆନୁଷଙ୍ଗିକ ଯନ୍ତ୍ର ଓ ଶିଳ୍ପର ଅଭିବୃଦ୍ଧି ସମ୍ଭବ କି ନୁହେଁ, ଏହା ହୁଏତ ପ୍ରଶ୍ନ କରାଯାଇପାରେ । ଅନ୍ତତଃ ଆନ୍ତର୍ଜାତିକ ବାଣିଜ୍ୟର ମୀତନୀୟମର ଆଲୋଚନାରୁ କିଛି ଉତ୍ତର ମିଳିପାରେ । ଏକ ସମୟରେ ଏହି ସଭ୍ୟତା ଶ୍ରମର ଭୌଗୋଳିକ ବିଭାଗ କଥା ଚିନ୍ତା କରୁଥିଲା, ବଡ଼ ବଡ଼ କଳ କାରଖାନାମାନଙ୍କରେ ଶ୍ରମର ବିଭାଗଦ୍ୱାରା କାର୍ଯ୍ୟ ଦ୍ରୁତ ଓ ସଙ୍ଗଠିତଭାବରେ ହେବାଦ୍ୱାରା ପରିଶେଷରେ ଜାତି ଯେପରି ଲାଭବାନ ହୁଏ, ସେହିପରି ଆନ୍ତର୍ଜାତୀୟ ବାଣିଜ୍ୟରେ ଶ୍ରମର ଆନ୍ତର୍ଜାତୀୟ ବିଭାଗ ଦ୍ୱାରା ପରିଶେଷରେ ସମଗ୍ର ମାନବଜାତି ଲାଭବାନ ହେବ ବୋଲି ବିଶ୍ୱାସ କରାଗଲା । ୟୁରୋପୀୟ ସଭ୍ୟତା ସେତେବେଳେ ଉନ୍ନତିର ପଥରେ । ମଣିଷ ମନ ଆଶାରେ ପୂର୍ଣ୍ଣ । ତେଣୁ ତତ୍ତ୍ୱ ଆଲୋଚନା ବି ଆଶାବାଦୀ ହୋଇ ଉଠିଲା । ୟୁରୋପୀୟ ସଭ୍ୟତା ଯେ କେତେକ ନିର୍ଦ୍ଦିଷ୍ଟ ଜାତିର ସର୍ବୋଚ୍ଚ ଦକ୍ଷତା

ବିଗକୁ ଅଗ୍ରଗତି କରୁଛୁ, ଏହା ସେମାନେ ଭୁଲି ଯାଇ ମାନବ ଜାତିର ସାମଗ୍ରିକ ଦକ୍ଷତା ବୃଦ୍ଧି ପାଇବ ବୋଲି ବିଗ୍ଭର କଲେ । ଏହା ବ୍ୟକ୍ତିଗତ ଆନ୍ତର୍ଜାତୀୟ ବାଣିଜ୍ୟ ଯେ ଆନ୍ତର୍ଜାତୀୟ ଶ୍ରମର ବିଭାଗ ସହ ଜଡ଼ିତ, ଏହି ଭ୍ରମ ଧାରଣାର ଅନ୍ୟ କୌଣସି ଯୁକ୍ତିଯୁକ୍ତ ବିଶ୍ଳେଷଣ ନାହିଁ, କିନ୍ତୁ ୟୁରୋପୀୟ ସଭ୍ୟତା ଯେତେବେଳେ ଅଧିକ ଧନଶାଳୀ ଓ ଅଳ୍ପ ଧନଶାଳୀ ଭେଦର ବିଭିନ୍ନ ସମାଜରେ ବିଭକ୍ତ ହୋଇଗଲା ଓ ପଶ୍ଚିମ ୟୁରୋପର କେତେକ ଦେଶରେ ବେକାର ସମସ୍ୟା ଏକ ନିରବଚ୍ଛିନ୍ନ ରୋଗ ପରି ଦେଖାଗଲା, ସେତେବେଳେ ନୂତନଭାବରେ ଚିନ୍ତା ଓ ଚେଷ୍ଟା କରିବାର ଆବଶ୍ୟକତା ଆସିଲା । କିନ୍ତୁ ସେତେବେଳେ ବି ସାମଗ୍ରିକ ଦକ୍ଷତା ଦିଗରୁ ଚିନ୍ତା ନ କରି ପୃଥିବୀରେ ସେହି ସର୍ବୋଚ୍ଚ ଦକ୍ଷତାକୁ ଆଖି ଆଗରେ ରଖି ଚିନ୍ତା କରାଗଲା । ଅବଶ୍ୟ ୟୁରୋପୀୟ ସଭ୍ୟତା ସବୁ ସମୟରେ ସମଗ୍ର ମାନବଜାତି ପାଇଁ ଉପଯୋଗୀ ଏହିପରି ଆଦର୍ଶର କଥା ପ୍ରଗ୍ଭର କରିଛି, କିନ୍ତୁ ସବୁ ସମୟରେ ଏହି ଆଦର୍ଶ ପ୍ରଗ୍ଭରର ଅନ୍ତରାଳରେ କେବଳନିଁ ନିଜକୁ ଉନ୍ନତ କରିବାର ସ୍ୱାର୍ଥମୂଳକ ଇଚ୍ଛା ଲୁଚି ରହିଛି । ତେଣୁ ବେକାର ସମସ୍ୟା ଯେପରି ଆଦୌ ନ ରହିବ, ସେହି ଦୃଷ୍ଟିରୁ ଆନ୍ତର୍ଜାତୀୟ ବାଣିଜ୍ୟର ନୀତିନିୟମକୁ ପରିବର୍ତ୍ତନ କରାଗଲା ।

କିନ୍ତୁ ଆବରଣ ଯାହା ବି ଆଯାଉନା କାହିଁକି, ଏହି ଆନ୍ତର୍ଜାତୀୟ ବାଣିଜ୍ୟର ଧାରଣା ମୁଖ୍ୟତଃ ପଶ୍ଚିମ ୟୁରୋପୀୟ । ଏହାର ପୃଷ୍ଠଭୂମିରେ ସୁଷମ କର୍ମଯୋଗାଣର ନୀତି ବିଦ୍ୟମାନ, କିନ୍ତୁ ପୃଥିବୀର ବହୁ ଅଞ୍ଚଳରେ ଲୋକମାନେ ଯେ ସେମାନଙ୍କର ଯୋଗ୍ୟତା ଓ ଦକ୍ଷତା ଅନୁଯାୟୀ ଠିକ୍ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି, ତା ନୁହେଁ । ତେଣୁ ଏହିସବୁ ଅଞ୍ଚଳରେ ଉତ୍ପାଦିତ ହେଉଥିବା ଅର୍ଥର ପରିମାଣ ଯେଉଁ ଅଞ୍ଚଳରେ ସୁଷମ କର୍ମସଂସ୍ଥାନ ସମ୍ଭବ ସେ ଅଞ୍ଚଳଠାରୁ ଯଥେଷ୍ଟ କମ୍ ଓ ଏମାନଙ୍କ ପାଇଁ ଆନ୍ତର୍ଜାତୀୟ ବାଣିଜ୍ୟର ଉପଯୋଗିତା ପ୍ରାୟ ନାହିଁ କହିଲେ ଚଳେ ।

କେବଳ ଯଦି ବିଲାତ ଓ ଆମେରିକାପରି ଦେଶ କଥା ଧରାଯାଏ, ତାହାହେଲେ ଏହି ଆନ୍ତର୍ଜାତୀୟ ବାଣିଜ୍ୟର ତତ୍ତ୍ୱ ହୁଏତ ଠିକ୍ ବୋଲି

ମନେହେବ । ତାର କାରଣ ଏ ଉଭୟ ଦେଶର ଅର୍ଥନୀତିର କର୍ମଯୋଗାଣ ଶକ୍ତି ଓ ଦକ୍ଷତା ପ୍ରାୟ ପରସ୍ପର ସହିତ ତୁଳନୀୟ ହୋଇଥିବାରୁ ଉଭୟ ଦେଶରେ ଯଦି ବେକାର ସମସ୍ୟା ହଠାତ୍ ବ୍ୟାପକ ହୋଇପଡ଼େ, ତାହେଲେ ଆନ୍ତର୍ଜାତୀୟ ଶ୍ରମର ବିଭାଗ ଓ କର୍ମସଂସ୍ଥାନ ଉପରେ ନିର୍ଭରଶୀଳ ଆନ୍ତର୍ଜାତୀୟ ବାଣିଜ୍ୟ ଉଭୟ ଦେଶ ପକ୍ଷରେ କ୍ଷତିକର ହେବ । ଉନ୍ନତ ଦେଶମାନଙ୍କରେ ଘଣ୍ଟାଏ ପରିଶ୍ରମରେ ଯେଉଁ ଅର୍ଥ ଉତ୍ପାଦିତ ହୁଏ, ଅନୁନ୍ନତ ଦେଶମାନଙ୍କରେ ସେହି ଅର୍ଥ ଉତ୍ପାଦନ କରିବା ପାଇଁ ପ୍ରାୟ ୧୦-୧୫ ଘଣ୍ଟାର କଠିନ ପରିଶ୍ରମ ଲାଗିଥାଏ । ତେଣୁ ଉଭୟ ଦେଶ ମଧ୍ୟରେ ବାଣିଜ୍ୟର ଆଦାନପ୍ରଦାନ କେବେହେଲେ ସମାନ ସ୍ତରରେ ହୋଇ ପାରିବ ନାହିଁ ।

ତେଣୁ ସବୁ ଦେଶ ପାଇଁ ସମାନ ଭାବରେ ଉପଯୋଗୀ ହେଲାପରି ଆନ୍ତର୍ଜାତୀୟ ବାଣିଜ୍ୟର କଥା ଯଦି ଚିନ୍ତା କରାଯାଏ, ସେଥିପାଇଁ ଅନେକଗୁଡ଼ିଏ ଅବସ୍ଥାକୁ ଏକାଠି କରିବାକୁ ହେବ । ଯଥା ଆନ୍ତର୍ଜାତୀୟ ଶ୍ରମର ବିଭାଗ, ସମ୍ପୂର୍ଣ୍ଣ କର୍ମସଂସ୍ଥାନ ଓ ସୁଷମ ଉତ୍ପାଦନ ପ୍ରଭୃତି । ପୁଣି ଏ ଯେ କେବଳ ସମସ୍ତଙ୍କୁ କାମ ଯୋଗାଇବା ଆବଶ୍ୟକ ତା ନୁହେଁ, ଏ କର୍ମଯୋଗାଣ ଏପରି ଭାବରେ ନିୟନ୍ତ୍ରିତ ହେବା ଉଚିତ ଯେ, ସବୁ ଅଞ୍ଚଳରେ ଅନ୍ତତଃ ସମାନ ଅର୍ଥ ଉତ୍ପାଦିତ ହେବ । ଏହି ସଭ୍ୟତାରେ ଗତ ଦୁଇ ଶହ ବର୍ଷ ଧରି ବହୁ ଅର୍ଥନୈତିକ ତତ୍ତ୍ୱ ଆଲୋଚିତ ହୋଇଛି । ଏହା ସତ୍ତ୍ୱେ ସମାନ ଉତ୍ପାଦନ ଉପରେ ନିର୍ଭରଶୀଳ ସଂପୂର୍ଣ୍ଣ କର୍ମଯୋଗାଣ ନୀତି ଆଜି ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ଏପରି ଏକ ନୀତିର ଅନ୍ତର୍ନିହିତ ବିସ୍ଫୋରଣ ଶକ୍ତି ପ୍ରଚୁର । ଏହି ନୀତିର ପ୍ରତିଷ୍ଠା ଦ୍ୱାରା ବହୁ ପ୍ରଚଳିତ ଧାରଣାସବୁ ନଷ୍ଟଭ୍ରଷ୍ଟ ହୋଇଯିବ । ଯେପରିକି, ୧—ଜାତିର ସୀମା ଭିତରେ ଜୀବନ ଧାରଣର ମାନ କ୍ରମଶଃ ବୃଦ୍ଧିଲାଭ କରିଥାଏ । ୨—ବର୍ତ୍ତମାନର ଯନ୍ତ୍ର ଓ ଶିଳ୍ପ ସଭ୍ୟତା ବୈଜ୍ଞାନିକ ପ୍ରଣାଳୀରେ ନିୟନ୍ତ୍ରିତ ଓ ୩—ପ୍ରତ୍ୟେକ ରାଜ୍ୟ ଗୋଟିଏ ଗୋଟିଏ ଜାତି ପରି ଓ ରାଜ୍ୟର ସବୁ କାର୍ଯ୍ୟ କେବଳ ସେହି ନିର୍ଦ୍ଦିଷ୍ଟ ଜାତି ପାଇଁ ଉଦ୍ଦିଷ୍ଟ । କିନ୍ତୁ ଏହିପରି ଚିନ୍ତା କରିବା ପୂର୍ବରୁ ପ୍ରଥମେ

ନିଜ ପ୍ରତି ନିଷ୍ଠାପର ହେବା ଉଚିତ ଓ ପୃଥିବୀର ସମସ୍ତେ ଭଲରେ ରହନ୍ତୁ, ଏହି ଇଚ୍ଛାରୁ ନୂତନ କର୍ମପ୍ରେରଣା ଓ ଯନ୍ତ୍ର ଓ ଶିଳ୍ପର ନୂତନ ନିଯୁକ୍ତି ହେବା ଆବଶ୍ୟକ ।

ଏ ତତ୍ତ୍ୱ ଅନୁନ୍ନତ ଦେଶମାନଙ୍କରେ ଆଲୋଚିତ ହୋଇ ପ୍ରଚାରିତ ହୋଇଛି । ଆଜି ଯୁରୋପୀୟ ସଭ୍ୟତାର ଯେଉଁମାନେ ନେତା ଓ ବାହକ, ସେମାନେ ଏ ତତ୍ତ୍ୱ ଆଲୋଚନା କରି ଗ୍ରହଣ କରନ୍ତୁ । କିନ୍ତୁ ଏହାକୁ କେବଳ ତତ୍ତ୍ୱ ଭାବରେ ଗ୍ରହଣ କରିବାଠାରୁ ଆହୁରି ବଡ଼ କଥା ହେଉଛି, ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଇଚ୍ଛା ଓ ଉଦ୍ୟମ । ଏ ପ୍ରକାର ଇଚ୍ଛା ବା ନିଷ୍ଠାପରତାର କୌଣସି ସୂଚନା ଅନ୍ତତଃ ବର୍ତ୍ତମାନ ନାହିଁ । ତେବେ ସର୍ବୋଚ୍ଚ ଦକ୍ଷତା ଦିଗରୁ ସାମଗ୍ରିକ ଦକ୍ଷତା ଦିଗକୁ ସଭ୍ୟତା ପରିଚାଳିତ ହେବା ଉଚିତ, ଅନ୍ତତଃ ଏ ବିଷୟରେ ଲୋକମାନେ କ୍ରମଶଃ ଅବହିତ ହେଉଛନ୍ତି ।

ବର୍ତ୍ତମାନର ସଭ୍ୟତା ସମଗ୍ର ମାନବ ଜାତିର ମଙ୍ଗଳ କରି ନ ପାରୁଥିବାରୁ ଏହାଦ୍ୱାରା ମଣିଷର ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ବି ଜାଗ୍ରତ ହୋଇ ପାରୁନାହିଁ । କେବଳ ଜାତୀୟ ଉତ୍ପାଦନର ବୃଦ୍ଧି ପାଇଁ ତାର କ୍ଷମତାର ଯେତିକି ଅଂଶର ଉପଯୋଗିତା ଅଛି, ସେତିକିର ବିକାଶ ହେଉଛି । ଯେ ସବୁଠାରୁ ଅଲଗା ହୋଇ ରହୁଛି, ସେ ହୁଏତ ଧ୍ୟାନ ଧାରଣା କରିପାରେ । କିନ୍ତୁ ଜଣେ ପ୍ରତିଭାବାନ୍ ବ୍ୟକ୍ତି ବା ଏପରି କି ଜଣେ ସାଧାରଣ ବ୍ୟକ୍ତିର ଧ୍ୟାନଧାରଣା କରିବା ପାଇଁ ସମୟ ବା ଇଚ୍ଛା ନାହିଁ । ଆଧୁନିକ ସଭ୍ୟତାରେ ବ୍ୟକ୍ତି ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଲାଣି ଯେ, ତା ପକ୍ଷରେ ବଡ଼ ହେବା ପାଇଁ ଯେପରି ସୁଯୋଗ ନାହିଁ, ସ୍ୱଚ୍ଛନ୍ଦ ବିଶ୍ରାମ ନେବା ପାଇଁ ସେହିପରି ସମୟ ନାହିଁ । ମଣିଷର ମନ ସତେ ଯେପରି ତା ଯାତ୍ରାର ଶେଷରେ ଆସି ଉପନୀତ । ଏକ ଚିରସ୍ଥାୟୀ କିନ୍ତୁ ଉଦ୍ଦେଶ୍ୟବିହୀନ ଅଶାନ୍ତିରେ ତାର ମନ ବର୍ତ୍ତମାନ ଆଚ୍ଛନ୍ନ ଓ ତାର ସାଂସ୍କୃତିକ-ମାନସ ଅନେକ ସମୟରେ ବଡ଼ ବିକୃତ ଓ ଉଦ୍ଭଟ ଭାବରେ ପ୍ରକାଶ ପାଉଛି । ତେଣୁ ବହି ଲେଖା ବଢ଼େଇ କାମ ପରି ଏକ ହବିରେ ପରିଣତ ହେଲାଣି ଓ ବହି ପଢ଼ାକୁ ଗୋଟିଏ ଆରାମଦାୟକ ବିଛଣା ସହିତ ତୁଳନା କରିଯାଇପାରେ । ଯାହାକୁ ବ୍ୟବହାର କଲେ ଦୁଃଖ ଜଞ୍ଜାଳରୁ ଅନ୍ତତଃ

ସାମଗ୍ରିକ ଭାବରେ ହାହା ମିଳିବ । ଆଧୁନିକ ମଣିଷ କର୍ମତତ୍ପର; କିନ୍ତୁ ତାର ଆଉ ନିଜସ୍ୱ କିଛି ନାହିଁ । ତାର ଦୁଃଖ ହେଉଛି ସେ ଯଥେଷ୍ଟ ପରିଶ୍ରମ କରୁଛି; କିନ୍ତୁ ଏ କେବଳ ରୁଟିନ୍ ପରିଶ୍ରମ—ଯେଉଁଥିରେ ବିଶ୍ରାମ ଅଛି କିନ୍ତୁ ଆନନ୍ଦ ନାହିଁ ।

ଏ ସଂପର୍କରେ ଭୁଲ ବୁଝାମଣା ନ ହେଲେ ଭଲ । ଆଧୁନିକ ମଣିଷର ଯାହା କ୍ଷମତା ତା ସ୍ୱୀକାର କରିବାକୁ ହେବ । ବର୍ତ୍ତମାନର ପୃଥିବୀରେ ଯେତେ ଗୋଷ୍ଠୀର ମଣିଷ ଅଛନ୍ତି, ସେ ସମସ୍ତଙ୍କ ଭିତରେ ଆଧୁନିକ ମଣିଷର ଶାରୀରିକ ଓ ନୈତିକ ଦକ୍ଷତା ଯଥେଷ୍ଟ ଉଚ୍ଚରେ । ଗୋରା ଲୋକମାନେ ଆଧୁନିକ ମଣିଷର ବିଶିଷ୍ଟ ପ୍ରତିନିଧି ଓ ସେମାନେ ଅଲମ୍ପିକ ପରି କ୍ରୀଡ଼ା ଅନୁଷ୍ଠାନମାନଙ୍କରେ ଅତି ସହଜରେ ପ୍ରଥମ ଉଚ୍ଚନେ ସ୍ଥାନ ଅଧିକାର କରନ୍ତି । ବର୍ତ୍ତମାନ ଏହି ପ୍ରତିଯୋଗିତାରେ ନିଗ୍ରୋ ଗୋଷ୍ଠୀ ଉଠି ଆସୁଛି । କିନ୍ତୁ କେତେକ ନିର୍ଦ୍ଦିଷ୍ଟ ପରିବେଶ ଛାଡ଼ି-ଦେଲେ ଅନ୍ୟାନ୍ୟ ଗୋରା ଲୋକମାନଙ୍କ ତୁଳନାରେ ତାର ଶାରୀରିକ ଉତ୍କର୍ଷତାର ସଫଳକୃତିର ପରିଚୟ ବିଶେଷ ନାହିଁ । ଯାହା ଅଛି, ସେ କେବଳ ସମ୍ଭାବନା । ପୁଣି କେତେକ ଗୋରାଜାତିର ଲୋକେ ଗତ ବିଶ୍ୱ-ଯୁଦ୍ଧର ପରାଜୟ ଓ ଧ୍ୱଂସରୁ ନିଜକୁ ଯେପରି ପୁନର୍ଗଠିତ କରିପାରିଲେ, ତା ଦ୍ୱାରା ସେମାନଙ୍କର ନୈତିକ ଦକ୍ଷତା ପ୍ରମାଣିତ ହେଉଛି । ବିଶେଷକରି ଜର୍ମାନୀ ତା ନିଜର ଯୁଦ୍ଧପୂର୍ବ ଅବସ୍ଥାକୁ ଯଥେଷ୍ଟ ଅତିକ୍ରମ କରିଗଲାଣି । ଜୀବନ ଧାରଣର ମାନ ବଢ଼ିବା ସଙ୍ଗେ ସଙ୍ଗେ ଆଧୁନିକ ମଣିଷର ଶାରୀରିକ ଓ ନୈତିକ ଦକ୍ଷତା କିପରି ଉନ୍ନତି କରେ, ଯୁଦ୍ଧୋତ୍ତର ଜର୍ମାନୀ ତାର ଉଦାହରଣ ।

ଏହାସତ୍ତ୍ୱେ ଆଧୁନିକ ମଣିଷ ମନରେ ଶାନ୍ତି ନାହିଁ ଓ ସେ ନୂତନ ଦିଗ୍ଦର୍ଶନ ଦେଇ ପାରିବ ନାହିଁ । ସେ ଏବେ ବି ଯଥେଷ୍ଟ ପରିଶ୍ରମ କରୁଛି; କିନ୍ତୁ ବୈଶିଷ୍ଟ୍ୟହୀନ ଭାବରେ ନିଜକୁ ବାରମ୍ବାର ପ୍ରକାଶ କରିବାର ଏହି ଶେଷହୀନ କ୍ଳାନ୍ତି ସେ କେତେ ଦିନ ସହ୍ୟ କରିପାରିବ ? ସେ ନିଜର ମାନସିକ ସଂଘର୍ଷର ଗ୍ଲାନିରେ ଦିନେ ହୁଏତ ନଷ୍ଟଭ୍ରଷ୍ଟ ହୋଇଯିବ । ସେ

ନିଜେ ଅଶାନ୍ତ, ଅସ୍ଥିର । ଶାନ୍ତି ପାଇବ କିପରି ? ଜୀବନର ଯାତ୍ରାପଥରେ ନୂତନର ଅନୁସନ୍ଧାନ କିପରି କରିବାକୁ ହେବ, ସେ ଜାଣେ ନା । ବର୍ତ୍ତମାନ ସଭ୍ୟତାର ମୂଳଭିତ୍ତି ମାନସିକ ଶାନ୍ତି ଓ ସହଜ କାର୍ଯ୍ୟ-ପ୍ରଣାଳୀର ପରିପନ୍ଥୀ । ଏହି ଭିତ୍ତିରେ ଏତେ କିଛି ତିଆରି କରାଯାଇଛି ଯେ, ଆଉ ନୂତନ କିଛି କରିବା ସମ୍ଭବ ନୁହେଁ । ବ୍ୟକ୍ତିର ବାହ୍ୟ କାର୍ଯ୍ୟ ସହିତ ତାର ମାନସିକ ସ୍ଥୈର୍ଯ୍ୟ ମିଳିତ ହୋଇ ଯେଉଁ ସାଂସ୍କୃତିକ-ମାନସର ସୃଷ୍ଟି ହୁଏ । ତା ଫଳରେ ତାର ସମଗ୍ର ବ୍ୟକ୍ତିତ୍ୱ ବିକାଶର ଆନନ୍ଦ ସେ ପାଇଥାଏ । ପୁରୁଣା ସଭ୍ୟତାକୁ ଫେରିଯିବା ଦ୍ୱାରା ସେ ଯେ ସ୍ଥୈର୍ଯ୍ୟ ଫେରିପାଇବ, ତା ନୁହେଁ । ସେହିପରି ବର୍ତ୍ତମାନର ସଭ୍ୟତାରେ ତାକୁ ଯେ ସବୁ ସମୟରେ କାର୍ଯ୍ୟ ମିଳିବ ତା ବି ନୁହେଁ । ପୁଣି ଉଭୟ ସଭ୍ୟତାର ବିଭିନ୍ନ ବିଚ୍ଛିନ୍ନ ଖଣ୍ଡକୁ ମିଳିତ କଲେ ପରିଣାମରେ ସେ କେବଳ ସ୍ଥୈର୍ଯ୍ୟର ଆଳସ୍ୟ ଓ କାର୍ଯ୍ୟର ସଂଘର୍ଷ ହିଁ ପାଇବ । ଦୁଃଖର କଥା, ଆଧୁନିକ ମଣିଷର ଏହାହିଁ ମୋଟାମୋଟି ମନୋଭାବ । ଅର୍ଥାତ୍ ସେ ହୁଏତ ପଛକୁ ଫେରିଯିବାକୁ ଚାହେଁ ବା ଯାହା ଅଛି ତାକୁ ଠିକ୍ ସେମିତି ଚଳେଇନେବାକୁ ଚାହେଁ ବା ଉଭୟକୁ ଯେନତେନ ମିଶେଇ ଦେବାପାଇଁ ତାର ଇଚ୍ଛା । ଗଧ ପୁରୁଣା ମୂଳାକୁ ନ ଛାଡ଼ିଲା ପର୍ଯ୍ୟନ୍ତ ବୋଧହୁଏ ନୂଆ କଥା ଭାବିପାରିବ ନାହିଁ ।

କେହି କେହି ହୁଏତ ୟୁରୋପୀୟ ସଭ୍ୟତାର ଆଟଲାଣ୍ଟିକ ଓ ସୋଭିଏଟ ଭେଦରେ ଦୁଇ ଗୋଷ୍ଠୀ ବିଭାଗ କଥା କହିପାରନ୍ତି । କିନ୍ତୁ ସର୍ବୋଚ୍ଚ ଦକ୍ଷତା ଦିଗରୁ ସାମଗ୍ରିକ ଦକ୍ଷତା ଦିଗକୁ ଅଗ୍ରଗତିରେ ଏ ଗୋଷ୍ଠୀ ବିଭେଦର କୌଣସି ବିଶେଷ ମୂଲ୍ୟ ନାହିଁ । ଏ ବିଭେଦର ଭାଷା ସାର୍ବଜନୀନ ଓ ଏମାନଙ୍କର ଗୃହୀତ ଆଦର୍ଶ ପୁଞ୍ଜିବାଦ ଓ କମ୍ୟୁନିଷ୍ଟ ବାଦପରି ସାର୍ବଜନୀନ ଆଦର୍ଶ । ଏପରି ଭାବରେ ପ୍ରଚାର କରାଯାଇଛି ସତେ ଯେପରି ମଣିଷର ସମଗ୍ର ଭାଗ୍ୟ ଏକ ଘୋର ସଙ୍କଟ କାଳର ସମ୍ମୁଖୀନ ହୋଇଛି ଓ ଏଥି ସହିତ ନୀତି, ଆଦର୍ଶ ଏବଂ ସାମାଜିକ ଓ ବିଶ୍ୱ ସଂଗଠନ ଜଡ଼ିତ । କିନ୍ତୁ ମଣିଷଜାତି ଓ ବ୍ୟକ୍ତି ଉଭୟର ପରିପ୍ରେକ୍ଷୀରେ ଯେଉଁ ସାମଗ୍ରିକ ଓ ସର୍ବାଙ୍ଗୀନ ଦକ୍ଷତାର ମୂଳତତ୍ତ୍ୱ ନିହିତ, ତାହା ସହିତ ଏହି ବିଭିନ୍ନ ବାଦର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ।

ଉଦାହରଣସ୍ୱରୂପ କମ୍ୟୁନିଷ୍ଟ ମତବାଦର ସୂଚନା ଦିଆଯାଇ-ପାରେ । ଏହି ମତବାଦରେ ଏକ ଶୋଷଣହୀନ ଅବସ୍ଥାର କଥା ଚିନ୍ତା କରାଯାଇଛି । ଏହି ଅବସ୍ଥାରେ ବ୍ୟକ୍ତିର ପରିପୂର୍ଣ୍ଣ ବିକାଶ ହେବା ସଙ୍ଗେ ସଙ୍ଗେ ଜାତି ଜାତି ମଧ୍ୟରେ ସମାନତା ପ୍ରତିଷ୍ଠିତ ହୋଇ ପାରିବ ଓ ଏକ ବିଶ୍ୱ ସଂଗଠନ ସମ୍ଭବ ହେବ ବୋଲି ବିଶ୍ୱାସ । କିନ୍ତୁ ଏ ଧାରଣା ସବୁ ପୂର୍ବବର୍ତ୍ତୀ ପୁଞ୍ଜିବାଦର ଧାରଣାପରି ସମାନ ଅର୍ଥହୀନ ଓ ଛଳନା ପରିପୂର୍ଣ୍ଣ । କାରଣ ପୁଞ୍ଜିବାଦରେ ମଧ୍ୟ ସଂପୂର୍ଣ୍ଣ ପ୍ରତିଦ୍ୱନ୍ଦିତା ଉପରେ ନିର୍ଭର କରି ଏକ ବିଶ୍ୱ ସଂଗଠନ କଥା କୁହାଯାଇଥିଲା । କିନ୍ତୁ ଉଭୟ ମତବାଦରେ ଏହିସବୁ ଧାରଣାକୁ ନିର୍ଦ୍ଦିଷ୍ଟ ରୂପ ଦେବାକୁ କୌଣସି ଚେଷ୍ଟା ହୋଇନାହିଁ । ସମଗ୍ର ପୃଥିବୀରେ ପୁଞ୍ଜିର ସୁଷମ ବିନିଯୋଗ ବା ସମଗ୍ର ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ବିକାଶ ଦିଗରେ ସେସବୁ ମତବାଦରେ କୌଣସି ଦରକାରୀ କଥା କୁହାଯାଇ ନାହିଁ ବା କରାଯାଇ ନାହିଁ ।

ଏ କିଛି ନୂଆ କଥା ନୁହେଁ । ପୂର୍ବବର୍ତ୍ତୀ ସଭ୍ୟତାମାନଙ୍କରେ ବି ପରିପୂର୍ଣ୍ଣ ବିକାଶ ପରେ ଯେତେବେଳେ ଅବକ୍ଷୟ ଆରମ୍ଭ ହୋଇଛି, ସେତେବେଳେ ନିଜକୁ ପୁନଃପ୍ରତିଷ୍ଠା କରିବା ପାଇଁ ସଭ୍ୟତାସବୁ ଖଣ୍ଡ ଖଣ୍ଡ ହୋଇଯାଇଛି । ପଶ୍ଚିମରେ ରୋମ ଓ ବାଇଜାଣ୍ଟିୟମ ସଭ୍ୟତା, ମଧ୍ୟପ୍ରାଚ୍ୟର ମେମ୍ଫିସ୍ ଓ ନିନେଭ ସଭ୍ୟତା ବା ଭାରତର ପାଣ୍ଡବ ଓ କୌରବ ସଭ୍ୟତା ଏହିପରି ଉଦାହରଣ । ଏହିସବୁ ସଭ୍ୟତା ଖଣ୍ଡଖଣ୍ଡ ହେବାଦ୍ୱାରା ଯେଉଁ ଘୋର ଯୁଦ୍ଧ ବିଗ୍ରହ ସୃଷ୍ଟି ହୋଇଥିଲା, ସେଥିରେ ସମସାମୟିକ ପୃଥିବୀ ଆଲୋଡ଼ିତ ହୋଇ ଯାଇଥିଲା । ଅନ୍ତତଃ ସେ ସମୟର କବି ଓ ଲେଖକମାନେ ଏହାହିଁ ଲେଖି ଯାଇଛନ୍ତି ଓ ଏସବୁରେ ଯଥେଷ୍ଟ ସତ୍ୟ ଅଛି । କିନ୍ତୁ ଏ ଭାଗ ଭାଗ ହେବାରେ ଏପରି କିଛି ନାହିଁ, ଯେଉଁଥିରେ କି ସାରା ପୃଥିବୀ ଆଲୋଡ଼ିତ ହେବା ଉଚିତ ।

ଏ ସଂପର୍କରେ ମହାଭାରତ କଥା ସ୍ମରଣ କରାଯାଇପାରେ । କୌରବ ଓ ପାଣ୍ଡବମାନେ ପରସ୍ପର ସହିତ ଯୁଦ୍ଧ କରି ନିହତ

ହେଲେ ; କିନ୍ତୁ ସେମାନେ ସବୁବେଳେ ନିଜକୁ ୧୦୫ ଭାଇ ବୋଲି କହୁଥିଲେ । ସେମାନେ ପରସ୍ପର ସହିତ ନିର୍ଦ୍ଦୟ ଭାବରେ ଯୁଦ୍ଧ କଲେ ବି ନିଜର ସମ୍ମିଳିତ ବୁଦ୍ଧି ଓ ଦକ୍ଷତାଦ୍ୱାରା ସମସାମୟିକ ସଭ୍ୟତାକୁ ପୁଷ୍ଟ କରିଥିଲେ । ଆଧୁନିକ କାଳରେ ବି ଆଟଲାଣ୍ଟିକ ଓ ସୋଭିଏତ୍ ଗୋଷ୍ଠୀଭୁକ୍ତ ଦେଶମାନେ ସେମାନଙ୍କର ନିଜ ନିଜ ଉପାୟରେ ଆଧୁନିକ ସଭ୍ୟତାର ବୃଦ୍ଧିରେ ସହାୟତା କରିଛନ୍ତି । ଜାତୀୟ ଉତ୍ପାଦନର ବୃଦ୍ଧି, ନିଜର ନିର୍ଦ୍ଦିଷ୍ଟ ଜାତୀୟ ପରିସର ଭିତରେ ଜୀବନଧାରଣର ମାନର ଉନ୍ନତି, ବ୍ୟାପକ ଭାବରେ ଶିଳ୍ପ ଓ କୃଷିରେ ବିଜ୍ଞାନର ପ୍ରୟୋଗ, ଗୃହର ସୁଖସ୍ୱାଚ୍ଛନ୍ଦ୍ୟ ଓ ସାମାଜିକ ସମାନତାପାଇଁ ଉଦ୍ୟମ, ଏସବୁ ଆଧୁନିକ ୟୁରୋପୀୟ ସଭ୍ୟତାର ଅଗ୍ରଗତିର ବିଭିନ୍ନ ଦିଗ । କେବଳ ସମ୍ପତ୍ତିରେ ଅଧିକାର ନେଇ ସେମାନେ ବିଭିନ୍ନ ଉପାୟ ଅବଲମ୍ବନ କରିଛନ୍ତି ଓ ଏହି ଉପାୟର ବିଭିନ୍ନତା ନେଇ ଘୋର କ୍ଷତିକାରକ ଯୁଦ୍ଧ ଘଟିପାରେ । କିନ୍ତୁ ସେମାନଙ୍କର ସବୁ ଉଦ୍ୟମର ଲକ୍ଷ୍ୟ ଏକ ଓ ସେମାନଙ୍କର ପରିସରର ବାହାର ଲୋକଙ୍କ ପାଇଁ ସେମାନେ ୧୦୫ ଭାଇ ।

କିନ୍ତୁ ପରସ୍ପର ସହିତ ଯୁଦ୍ଧ ପାଇଁ ସେମାନଙ୍କର ରେ ରେ କାର ଶବ୍ଦ ବାସ୍ତବିକ ଖୁବ୍ ଭୀତିପ୍ରଦ । ବାହାରୁ ମନେହେବ ସତେ ଯେପରି ଆଧୁନିକ ଜଗତର କୌଣସି ମାନବିକ ଆଦର୍ଶ, ଚିନ୍ତାଧାରା ବା ଜୀବନଧାରଣର ପ୍ରଣାଳୀ ନଷ୍ଟଭ୍ରଷ୍ଟ ହେବାକୁ ବସିଛି ଓ ସେମାନେ ବିଭିନ୍ନଭାବରେ ସେସବୁ ରକ୍ଷା କରିବାକୁ ତତ୍ପର । ମଣିଷର ଇତିହାସରେ ଏ ଏକ ଘୋର ଦୁଃଖ-ଦାୟକ ଅବସ୍ଥା । ଦାସମାନେ ଅନେକ ସମୟରେ ସେମାନଙ୍କର ପ୍ରଭୁମାନଙ୍କର ପାରସ୍ପରିକ କଳହ ବା ଯୁଦ୍ଧରେ ଆଦର୍ଶବାଦ ଦୃଷ୍ଟିରୁ ଅଂଶ ଗ୍ରହଣ କରିଛନ୍ତି । କିନ୍ତୁ ଆଜି ପୁଞ୍ଜିବାଦ ଓ କମ୍ୟୁନିଷ୍ଟବାଦ ଭିତରେ ଯେଉଁ କଳହ ଦେଖାଦେଇଛି, ପୃଥିବୀର ଅନୁନ୍ନତ ଦେଶମାନେ ସେଥିରୁ ନିଜକୁ ଅଲଗା ରଖିବା ସମ୍ଭବ ନୁହେଁ । ସେହିପରି ପ୍ରଭୁ-ଦେଶ-ମାନଙ୍କୁ ସେମାନଙ୍କର କଳହ ଯେ ସଂପୂର୍ଣ୍ଣ ଅଯୌକ୍ତିକ, ଅନାବଶ୍ୟକ, ଅର୍ଥହୀନ ଓ ଏହାଦ୍ୱାରା ମଣିଷର ନୂତନ ସଭ୍ୟତା ସୃଷ୍ଟିହୋଇ ପାରିବ ନାହିଁ, ଏଇକଥା ବୁଝେଇବା ଖୁବ୍ ସହଜ ନୁହେଁ ।

ସଂଘର୍ଷ ବ୍ୟକ୍ତିତ ନୂତନର ସୃଷ୍ଟି ହୁଏ ନା କିନ୍ତୁ ଏବଂ ସଂଘର୍ଷ ସବୁ ସମୟରେ ରକ୍ତାକ୍ତ ଓ ଧ୍ୱଂସକାରକ ହେବାର କିଛି କାରଣ ନାହିଁ । ଅତୀତର ସଂଘର୍ଷମାନଙ୍କରେ ଖୁବ୍ ରକ୍ତକ୍ଷୟ ଘଟିଛି, ଏକଥା ସତ । କିନ୍ତୁ ସେଥିପାଇଁ ରାଜ୍ୟ ଭିତରର ଗୋଷ୍ଠୀ ଓ ଜାତିର ସମ୍ପର୍କ ଓ ରାଜ୍ୟ ବାହାରର କ୍ଷମତା ଓ ଅର୍ଥର ପ୍ରଭାବ ମୁଖ୍ୟତଃ ଦାୟୀ । ଏସବୁ ସମ୍ପର୍କ ଓ ପ୍ରଭାବକୁ ବାଦ ଦେବାକୁ ହେଲେ ସଂଘର୍ଷ ଅହିଂସ ଓ ସାଧାରଣ ଜୀବନର ନୀତି ନିୟମ ଭିତରେ ହେବା ଉଚିତ । କୌଣସି ନିର୍ଦ୍ଦିଷ୍ଟ ରାଜ୍ୟଭିତରେ ଅହିଂସ ସଂଗ୍ରାମର ରୂପରେଖ ବିଷୟରେ କିଛି କିଛି ଧାରଣା ହେଲଣି । କିନ୍ତୁ ରାଜ୍ୟ ରାଜ୍ୟ ଭିତରେ ଏହି ସଂଗ୍ରାମ କିପରି ପରିଚାଳିତ ହେବା ଉଚିତ, ସେ ବିଷୟରେ କିଛି ସ୍ପଷ୍ଟ ଚିନ୍ତା ନାହିଁ । ତେଣୁ ରାଜ୍ୟ ଭିତରେ ଅହିଂସ ସଂଗ୍ରାମକୁ ଅଧିକରୁ ଅଧିକ ମାର୍ଜିତ କରାଯିବା ସଙ୍ଗେ ସଙ୍ଗେ ଏହାର ବାହ୍ୟରୂପ କିଅଣ ହେବ, ସେ ବିଷୟରେ ଅନୁସନ୍ଧାନ ଆବଶ୍ୟକ ।

ବିପ୍ଳବ ଓ ସହାନୁଭୂତି ମିଶ୍ରିତ ହେଲେ ଆଇନ ଅମାନ୍ୟ ଆନ୍ଦୋଳନ ଜନ୍ମ ହୁଏ । ଉଭୟ ବ୍ୟକ୍ତି ଓ ଗୋଷ୍ଠୀ ପାଇଁ ଏହି ଆନ୍ଦୋଳନ ମନୋଭାବ ମଣିଷମନର ଏକ ସ୍ଥାୟୀ ବସ୍ତୁର ହେବା ଆବଶ୍ୟକ । ଜାତି-ଭିତରେ, ପୁଣି ଜାତି ଜାତି ମଧ୍ୟରେ ପ୍ରତ୍ୟହ ଭେଦ ବିଗ୍ରହ ଜନିତ ଅଗଣିତ ଅନ୍ୟାୟ ଘଟିଯାଉଛି । ତେଣୁ ଆଇନ ଅମାନ୍ୟ ଆନ୍ଦୋଳନ ମଣିଷ ମନର ଏକ ସ୍ଥାୟୀ ବସ୍ତୁର ନ ହେଲେ ହିଂସାତ୍ମକ ଅବସ୍ଥା ବିରୁଦ୍ଧରେ ଏହା ସଂଗ୍ରାମ କରି ପାରିବ ନାହିଁ । ମାନବ ବ୍ୟକ୍ତିତ୍ୱର ସାମଗ୍ରିକ ଓ ସର୍ବାଙ୍ଗୀନ ବିକାଶ ପାଇଁ ତାକୁ ଏପରି ଏକ ଅସ୍ତ୍ର ଦେବା ଆବଶ୍ୟକ, ଯାହାଦ୍ୱାରା କି ସବୁ ପ୍ରତିକୂଳ ଅବସ୍ଥାରେ ବି ସେ ନିଜର ସମ୍ମାନ ରଖିପାରିବ । ଆଇନ ଅମାନ୍ୟ ଆନ୍ଦୋଳନର ମନୋଭାବ ଏହିପରି ଏକ ଅସ୍ତ୍ର ଓ ବୋଧହୁଏ ଏକମାତ୍ର ଅସ୍ତ୍ର ।

ଇତିହାସ ଚକର ଗତି ବନ୍ଦ ହେବ କି ନାହିଁ ସେକଥା କିଏ କହିବ ? କିନ୍ତୁ ପୁଣି ଥରେ ଶୁଭ ଗ୍ରହମାନେ ଏକାଠି ହୋଇଛନ୍ତି । ମଣିଷକୁ ଶୀଘ୍ର ନିଜର ରାସ୍ତା ଠିକ୍ କରିବାକୁ ପଡ଼ିବ । ସେ ନୂଆପ୍ରକାର ସର୍ବୋଚ୍ଚ

ଦକ୍ଷତା ଦିଗକୁ ଆଗେଇବ ନା ସାମଗ୍ରିକ ଦକ୍ଷତାକୁ ଗ୍ରହଣ କରିନେବ। ଯେ ଯଦି ଇତିହାସର ଚକକୁ ଭାଙ୍ଗିଦେବାକୁ ସ୍ଥିର କରେ, ତେବେ ଏହି ନୂଆ ସଭ୍ୟତାର ସୂଚନା ଦିଗ୍‌ବଳୟରୁ ମିଳି ପାରିବ। ଏହାର ରୂପରେଖ ପ୍ରାୟ ସ୍ପଷ୍ଟ ହୋଇ ଆସିଲାଣି। ଏହି ନୂଆ ସଭ୍ୟତାରେ ଜାତି ଜାତି ମଧ୍ୟରେ ସମାନତା ପ୍ରତିଷ୍ଠା ହେବା ସାଙ୍ଗେ ସାଙ୍ଗେ ଜାତି, ଶ୍ରେଣୀ ଓ ଆଞ୍ଚଳିକ ବୈଷମ୍ୟ ଦୂର ହୋଇପାରିବ ଓ ପୃଥିବୀଯାକ ଉତ୍ପାଦନରେ ସମାନତା ଆସିବ। ଏହି ସଭ୍ୟତା ଅନ୍ତର୍ଗତ ଯନ୍ତ୍ର ଓ ଶିଳ୍ପ ଓ ଏହାର ଶାସନ-ସଂଗଠନ ଏହାର ଆବଶ୍ୟକତା ଅନୁଯାୟୀ ହେବ। ସ୍ୱୟଂସଂପୂର୍ଣ୍ଣ ଗୋଷ୍ଠୀର ବିକେନ୍ଦ୍ରୀକରଣ ଏହାର ଗୋଟିଏ ଦିଗ। ଅନ୍ୟଦିଗରୁ ଏହାଦ୍ୱାରା ସବୁ ମଣିଷଜାତି ଏକାଠି ହୋଇ ନିଜକୁ ଶାସନ କରି ପାରିବେ। ଉତ୍ପାଦନର ଧାରାସବୁ ସାମାଜିକ ନିୟନ୍ତ୍ରଣରେ ରହିବ, କିନ୍ତୁ ଠିକ୍ ଠିକ୍ ଭାବରେ ବିଭକ୍ତ ହୋଇଥିବା ସଂପତ୍ତି ବ୍ୟକ୍ତିର ବ୍ୟବହାରରେ ଛାଡ଼ି ଦିଆ ଯାଇପାରେ। ଆୟର ସର୍ବୋଚ୍ଚ ଓ ସର୍ବନିମ୍ନ ସୀମା ଧାର୍ଯ୍ୟ କରି ତାକୁ ନିଷ୍ଠାପରଭାବରେ ପାଳନ କଲେ ବୈଷମ୍ୟ ଦୂର ହୋଇ ସମାନତାର ଶକ୍ତି ପ୍ରସାରିତ ହେବ। ମଣିଷ ବ୍ୟକ୍ତିଗତ ଭାବରେ ଓ ଗୋଷ୍ଠୀଗତ ଭାବରେ ଅନ୍ୟାୟ ବିରୁଦ୍ଧରେ ଆଇନ ଅମାନ୍ୟ ଆନ୍ଦୋଳନର କାର୍ଯ୍ୟକାରିତା ବୁଝିପାରିବ। ପୁରାଣ ସମ୍ବଳିତ ଇତିହାସ ଓ ମୁହୂର୍ତ୍ତ ସମ୍ବଳିତ କାଳାତୀତର ମିଳନ ଫଳରେ ମଣିଷ ବ୍ୟକ୍ତିଭାବର ସ୍ଥୈର୍ଯ୍ୟ ବୃଦ୍ଧି ଲାଭ କରିବ ଓ ସେ ନିଜକୁ ନୂତନ ସଭ୍ୟତାର ସୂକ୍ଷ୍ମ, ଶାନ୍ତ କାର୍ଯ୍ୟାବଳୀରେ ନିୟୋଜିତ କରିପାରିବ।

